| ସମ୍ମାନିତ ଅତିଥି | ପରିଚୟ ପ୍ରଦାନ କରିଛନ୍ତି | |
|---|---|---|
| ଗବେଷକ : | | |
| ଡକ୍ଟର ମନ୍ମଥନାଥ ଦାସ | ଡକ୍ଟର ସଚ୍ଚିଦାନନ୍ଦ ମହାନ୍ତି | । ୧ । |
| ଅଭିନେତା ଓ ନାଟ୍ୟକାର : | | |
| ନାଟ୍ୟାଚାର୍ଯ୍ୟ ରଘୁନାଥ ପଣ୍ଡା | ଶ୍ରୀ ସମେଶ୍ୱର ତ୍ରିପାଠୀ | । ୨୭ । |
| ସଙ୍ଗୀତଜ୍ଞ : | | |
| ସଙ୍ଗୀତ ପ୍ରଭାକର ମାର୍କଣ୍ଡେୟ ମହାପାତ୍ର | ଶ୍ରୀକୃଷ୍ଣଚନ୍ଦ୍ର ମହାପାତ୍ର | । ୩୭ । |
| ସମାଜସେବୀ : | | |
| ସେବକ ଶ୍ୟାମସୁନ୍ଦର | ଶ୍ରୀ ପ୍ୟାରୀମୋହନ ମହାନ୍ତି | । ୫୭ । |
| ନୃତ୍ୟଗୁରୁ : | | |
| ନୃତ୍ୟଗୁରୁ ପଙ୍କଜଚରଣ ଦାସ | ଶ୍ରୀ ଶୁଭନାରାୟଣ ସ୍ୱାଇଁ | । ୭୩ । |
| ସାହିତ୍ୟିକ : | | |
| ଅନନ୍ତ : ଆକାଶର ବ୍ୟାପ୍ତି | ଶ୍ରୀ ବସନ୍ତ ମହାନ୍ତି | । ୯୦ । |
| ସଙ୍ଗଠକ : | | |
| ଦାଶରଥି ପଟ୍ଟନାୟକ | ଅଧ୍ୟାପକ ଗୌରାଙ୍ଗ ଚରଣ ଦାସ | । ୧୦୨ । |

---


ମୂଲ୍ୟ : **ବାରଟଙ୍କା ମାତ୍ର**

ପ୍ରକାଶକାଳ : ୨୩ ମାର୍ଚ୍ଚ, ୧୯୮୭

ପ୍ରାପ୍ତି ସ୍ଥାନ : **ଓଡ଼ିଶା ବୁକ୍ ଷ୍ଟୋର**
ବିନୋଦବିହାରୀ, କଟକ-୭୫୩୦୦୨

ମୁଦ୍ରଣ : **ରେଖା ପ୍ରେସ**
ବାର୍ମି ସାହି, କଟକ-୭୫୩୦୦୯

ଉତ୍କଳ ପାଠକ ସଂସଦର—

ସଭାପତି : ଡକ୍ଟର ସଦାଶିବ ମିଶ୍ର
ସମ୍ପାଦକ : ଶ୍ରୀ ବ୍ରଜମୋହନ ମହାନ୍ତି
ସହସମ୍ପାଦକ : ଶ୍ରୀ ସୁଭାଷଚନ୍ଦ୍ର ମହାନ୍ତି

ସମ୍ପାଦନା :
ଡଃ ବଂଶୀଧର ... ମହାନ୍ତି
ଡଃ ବାସୁଦେବ ସାହୁ
ଶ୍ରୀ ଯଜ୍ଞେଶ୍ୱର ତ୍ରିପାଠୀ
ଶ୍ରୀ ସୁହାସ ରାୟ
ଶ୍ରୀ ଶୁଭନାରାୟଣ ସ୍ୱାଇଁ
ଶ୍ରୀ ଗୋକୁଳାନନ୍ଦ ଦାସ
ଶ୍ରୀ ବସନ୍ତ କୁମାର ମହାନ୍ତି

## ଉତ୍କଳ ପାଠକ ସଂସଦର କର୍ମକର୍ତ୍ତାଗଣ :

ସଭାପତି : ଡକ୍ଟର ସଦାଶିବ ମିଶ୍ର
ସମ୍ପାଦକ : ଡକ୍ଟର ବ୍ରଜମୋହନ ମହାନ୍ତି
ସହସମ୍ପାଦକ : ଶ୍ରୀ ସୁଭାଷଚନ୍ଦ୍ର ମହାନ୍ତି

## ପରାମର୍ଶଦାତା ମଣ୍ଡଳୀ :

ପଦ୍ମଭୂଷଣ କାଳନ୍ଦୀଚରଣ ପାଣିଗ୍ରାହୀ
ଜଷ୍ଟିସ୍ ହରିହର ମହାପାତ୍ର
ଡକ୍ଟର କୃଷ୍ଣଚରଣ ବେହେରା
ଡକ୍ଟର କୁଞ୍ଜବିହାରୀ ଦାଶ
ଶ୍ରୀ ଉକାରୀ ଚରଣ ମିଶ୍ର

## ପରିଚାଳନା ଓ ସମ୍ପାଦକ ମଣ୍ଡଳୀ :

ଶ୍ରୀ ପଠାଣି ପଟ୍ଟନାୟକ
ଡକ୍ଟର ବାସୁଦେବ ସାହୁ
ଡକ୍ଟର ସଚ୍ଚିଦାନନ୍ଦ ମହାନ୍ତି
ଶ୍ରୀ ପରମେଶ୍ୱର ତ୍ରିପାଠୀ
ଶ୍ରୀ ଶୁଭନାରାୟଣ ସ୍ୱାଇଁ
ଶ୍ରୀ ଗୋକୁଳାନନ୍ଦ ଦାସ
ଶ୍ରୀ ବସନ୍ତ କୁମାର ମହାନ୍ତି
ଶ୍ରୀ ରହାସ ରାୟ
ଶ୍ରୀ ବରଦାପ୍ରସନ୍ନ ପଟ୍ଟନାୟକ
ଶ୍ରୀମତୀ ବୀଣାପାଣି ମହାନ୍ତି
ଶ୍ରୀ ରାଧାଶ୍ୟାମ ମହାନ୍ତି
ଶ୍ରୀ ଗୋବିନ୍ଦଚରଣ ପାତ୍ର
ଶ୍ରୀ ପ୍ରଫୁଲ୍ଲଚନ୍ଦ୍ର ପଟ୍ଟନାୟକ
ଶ୍ରୀମତୀ ସୁଜାତା ମହାନ୍ତି
ଶ୍ରୀ ଚନ୍ଦ୍ରଶେଖର ପ୍ରଧାନ
ଶ୍ରୀ ଅର୍ଜୁନ ଦାଶ
ଶ୍ରୀ ନବୀନ ପଟ୍ଟନାୟକ
ଶ୍ରୀ ତପନ ମିଶ୍ର



ନାଟ୍ୟକାର
ଶ୍ରୀ ରତ୍ନନାଥ ପଣ୍ଡା



ଗବେଷକ
ଡକ୍ଟର ମନ୍ମଥନାଥ ଦାସ



ନୃତ୍ୟଗୁରୁ
ଶ୍ରୀ ପଙ୍କଜ ଚରଣ ଦାସ



ସାହିତ୍ୟିକ
ଶ୍ରୀ ଅନନ୍ତ ପଟ୍ଟନାୟକ



ସଙ୍ଗୀତଜ୍ଞ
ଶ୍ରୀ ମାର୍କଣ୍ଡେୟ ମହାପାତ୍ର



ସମାଜସେବୀ
ଶ୍ରୀ ଶ୍ୟାମସୁନ୍ଦର ମିଶ୍ର



ସଙ୍ଗଠକ : ଶ୍ରୀ ଦାଶରଥୀ ପଟ୍ଟନାୟକ

# ଏ ବର୍ଷର ବକ୍ତବ୍ୟ

ଏ ଜାତିର ଶତ ଶତ ପ୍ରତିଭାଧର ବ୍ୟକ୍ତି ସ୍ୱ ସ୍ୱ କ୍ଷେତ୍ରରେ ସୁପ୍ରତିଷ୍ଠିତ । କଳା, ବିଜ୍ଞାନ, ସାହିତ୍ୟ, ସଂସ୍କୃତି, ସ୍ଥାପତ୍ୟ, ଶିଳ୍ପ, ଭାସ୍କର୍ଯ୍ୟ ଇତ୍ୟାଦି ବିଭିନ୍ନ କ୍ଷେତ୍ରରେ ସେମାନଙ୍କ ସ୍ୱାକ୍ଷର ସୁସ୍ପଷ୍ଟ । ସେମାନଙ୍କ ମଧ୍ୟରୁ କେତେକ ହୁଏତ ସମାଜରେ ସ୍ୱୀକୃତ, ସମ୍ମାନିତ; ମାତ୍ର ବିଭିନ୍ନ କାରଣରୁ ଆହୁରି ଅନେକ ଉପଯୁକ୍ତ ସମ୍ମାନ ଲାଭରୁ ବଞ୍ଚିତ ।

ପ୍ରତିଭା ପୂଜା ତଥା ପୂଜ୍ୟପୂଜା ଗୋଟିଏ ଜାତିର ସାଂସ୍କୃତିକ ଜୀବନକୁ ଉଜ୍ଜ୍ୱଳ ତଥା ଋଦ୍ଧିମନ୍ତ କରିଥାଏ । ଓଡ଼ିଶାରେ ଅନେକ କୃତୀ-ସନ୍ତାନ ଜନ୍ମ ହୋଇ ବିଭିନ୍ନ କ୍ଷେତ୍ରରେ ଆନ୍ତର୍ଜାତିକ ସମ୍ମାନର ଅଧିକାରୀ ହୋଇ ପାରିଥିଲେ ସୁଦ୍ଧା, ସେମାନଙ୍କର ଜୀବନୀ-ପରିଚୟ, କୃତି-ଆଲେଖ୍ୟ ଯଥାଯଥ ଭାବରେ ସଂଗୃହୀତ ହୋଇ ପାରିନାହିଁ ।

ତେଣୁ ଉତ୍କଳ ପାଠକ ସଂସଦ ପୂଜ୍ୟପୂଜା-ପରମ୍ପରା ରକ୍ଷା ପାଇଁ ଜୀବିତ ପ୍ରତିଭାମାନଙ୍କୁ ସମ୍ମାନ ଦେବାର କ୍ଷୁଦ୍ର ପ୍ରୟାସ କରିଛି ମାତ୍ର । ଏହି କାର୍ଯ୍ୟକ୍ରମ ଅନୁଯାୟୀ ୧୯୮୪ ମସିହାରେ ସର୍ବଶ୍ରୀ କାହ୍ନୁଚରଣ ମହାନ୍ତି, ରାଧାମୋହନ ଗଡ଼ନାୟକ, ରାଜକିଶୋର ପଟ୍ଟନାୟକ, ଚାରୁଶୀଳଚରଣ ପାତ୍ର, କେଳୁଚରଣ ମହାପାତ୍ର ଓ ଭଗବାନ ପତି ଏବଂ ୧୯୮୫ ମସିହାରେ ଡକ୍ଟର କୁଞ୍ଜବିହାରୀ ଦାଶ, ଶ୍ରୀମତୀ ସରଳା ଦେବୀ, ଶ୍ରୀ ଶ୍ରୀଧର ମହାପାତ୍ର, ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ, ଶ୍ରୀମତୀ ମିନତି ମିଶ୍ର ଓ ଶ୍ରୀ ସାମୁଏଲ ସାହୁ (ବାବି)ଙ୍କୁ ସମ୍ବର୍ଦ୍ଧନା ଜ୍ଞାପନ କରାଯାଇଥିଲା । ପ୍ରଥମ ପାଞ୍ଚବର୍ଷରେ କେବଳ ମାନପତ୍ର ଖଣ୍ଡିଏ ଖଣ୍ଡିଏ ଦେଇ ଏହି ପ୍ରତିଭାଧରମାନଙ୍କୁ ସମ୍ମାନିତ କରିବାରେ ଏ ସଂସଦ ସନ୍ତୁଷ୍ଟ ହୋଇପାରି ନାହିଁ । ସେଥିପାଇଁ ପରେ ପର୍ଯ୍ୟାୟକ୍ରମେ ମହାନ୍ ବ୍ୟକ୍ତିମାନଙ୍କ ମଧ୍ୟରୁ ସାତଜଣଙ୍କୁ ସମ୍ମାନିତ କରି ସେମାନଙ୍କର ଜୀବନଚରିତ ଓ କୃତିକଳାପକୁ ପୁସ୍ତକ ଆକାରରେ ପ୍ରକାଶ କରି ଆସୁଅଛି ।

ଏହି ସଂସଦ ତରଫରୁ ଏପର୍ଯ୍ୟନ୍ତ ଏଗାରଗୋଟି ଜୀବନୀ-ସଙ୍କଳନ ପ୍ରକାଶ ପାଇଲାଣି ଯଥା:—(୧) ପ୍ରତିଭା ପରିଚୟ (୧୯୭୬), (୨) ସପ୍ତ-ରଶ୍ମି (୧୯୭୭), (୩) ସପ୍ତଶିଖା (୧୯୭୮), (୪) ସପ୍ତ ପ୍ରଦୀପ (୧୯୭୯), (୫) ସପ୍ତଶ୍ରୀ (୧୯୮୦), (୬) ସପ୍ତଜ୍ୟୋତି (୧୯୮୧), (୭) ସପ୍ତପୁଷ୍ପ (୧୯୮୨), (୮) ସପ୍ତରାଗ (୧୯୮୩), (୯) ସପ୍ତ ସୁମନ (୧୯୮୪) (୧୦) ସପ୍ତ ସ୍ତବକ (୧୯୮୫) ଓ ସଦ୍ୟ ପ୍ରକାଶିତ ସପ୍ତତରଙ୍ଗ ।

୧୯୭୬ର 'ପ୍ରତିଭା ପରିଚୟ' ପୁସ୍ତକରେ ସାହିତ୍ୟ ସାଧକ କାଳନ୍ଦୀ ଚରଣ ପାଣିଗ୍ରାହୀ, କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ, ସାହିତ୍ୟିକ—ସାମ୍ବାଦିକ ଜଦୁନାଥ ଷଡ଼ଙ୍ଗୀ, ନାଟ୍ୟକାର କାର୍ତ୍ତିକ କୁମାର ଘୋଷ, ମାଷ୍ଟର ରାମଚନ୍ଦ୍ର ମଣିଆ, ସ୍ୱର ସାଧକ ନମାଇଁଚରଣ ହରିଚନ୍ଦନ, ପୁସ୍ତକ ପ୍ରକାଶକ ଅନନ୍ତ ମିଶ୍ରଙ୍କ ଜୀବନୀ ଓ କୃତି ଆଲୋଚିତ ।

୧୯୭୭ରେ ସଂକଳିତ 'ସପ୍ତରଶ୍ମି' ପୁସ୍ତକରେ ଓଡ଼ିଶାର ବିଖ୍ୟାତ ସାମ୍ବାଦିକ ଡକ୍ଟର ରାଧାନାଥ ରଥ, ଜ୍ଞାନପୀଠ ପୁରସ୍କାର ବିଜେତା ଔପନ୍ୟାସିକ ଗୋପୀନାଥ ମହାନ୍ତି, ଚିତ୍ରଶିଳ୍ପୀ ବିପିନବିହାରୀ ଚୌଧୁରୀ, ଅନୁବାଦକ ଲଳିତେନ୍ଦୁ କୁମାର ରାୟ, ସଙ୍ଗୀତ-ସୁଧାକର ବାଳକୃଷ୍ଣ ଦାସ, ଭାରତୀଭୂଷଣ ସତ୍ୟନାରାୟଣ ରାଜଗୁରୁ ଏବଂ ପୁସ୍ତକ ପ୍ରକାଶକ ଗୋକୁଳ ଚନ୍ଦ୍ର କରଙ୍କର ଜୀବନୀ ଓ କୃତି ପ୍ରକାଶିତ ।

୧୯୭୮ରେ ପ୍ରକାଶିତ 'ସପ୍ତଶିଖା' ପୁସ୍ତକରେ ଅଭିନେତା ଯଜ୍ଞାନ୍ ଦାସ, ସ୍ୱାଧୀନତା ସଂଗ୍ରାମର ପ୍ରଥମ ରାଜବନ୍ଦୀ ରାଜକୃଷ୍ଣ ବୋଷ, କଳାକୁଞ୍ଜ ଯାଦୁକର ମୁରଲୀଧର ଟାଲି, ସାମ୍ବାଦିକ ଶ୍ରୀହର୍ଷ ମିଶ୍ର, କଥା-ସାହିତ୍ୟ ଶିଳ୍ପୀ ସୁରେନ୍ଦ୍ର ମହାନ୍ତି, ସଙ୍ଗୀତଜ୍ଞ ଶ୍ୟାମସୁନ୍ଦର ଧୀର୍ ଏବଂ ରୁଚିବନ୍ତ ପ୍ରକାଶକ ଗୋବିନ୍ଦ ଚରଣ ପାଟଙ୍କ ସାଧନାପୂର୍ଣ୍ଣ ଜୀବନୀ ସନ୍ନିବିଷ୍ଟ ।

୧୯୭୯ର 'ସପ୍ତ ପ୍ରଦୀପ' ପୁସ୍ତକରେ ଛଉନୃତ୍ୟଗୁରୁ ଚନ୍ଦ୍ରଶେଖର ଭଞ୍ଜ, ଚିତ୍ରଶିଳ୍ପୀ ହରିଚରଣ ମହାପାତ୍ର, ସଙ୍ଗୀତ ସାଧକ ଜଗବନ୍ଧୁ ସାହୁ,

ବାଲୁନ୍ଦାଞ୍ଚଳର କବି ଜଗନ୍ନାଥ ଦେବ, ଜନସେବୀ ନିତ୍ୟାନନ୍ଦ କାନୁନ୍‌ଗୋ, ଶିକ୍ଷାବିତ୍ ପ୍ରଫେସର ପ୍ରହ୍ଲାଦ ପ୍ରଧାନ, ସାରସ୍ୱତ ସାଧକ ଛନ୍ଦାକର ମୂପକାରଙ୍କ କୃତିଆଲେଖ୍ୟ ବର୍ଣ୍ଣିତ ।

୧୯୮୦ର 'ସପ୍ତଶ୍ରୀ' ପୁସ୍ତକରେ ସାହିତ୍ୟସେବୀ ଡକ୍ଟର ହରେକୃଷ୍ଣ ମହତାବ, ଐତିହାସିକ ଡକ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀ, ନାଟ୍ୟକାର ଶ୍ରୀ ରାମଚନ୍ଦ୍ର ମିଶ୍ର, ସାହିତ୍ୟିକ ଶ୍ରୀ ରାମପ୍ରସାଦ ସିଂହ, ବେଦାନ୍ତାଲଙ୍କାର ପଣ୍ଡିତ ଗଣେଶ୍ୱର ରଥ, ଗାୟକରତ୍ନ ବୈଦ୍ୟନାଥ ଶର୍ମା, ପାଲାଗାୟକ ଶ୍ରୀ ପରମାନନ୍ଦ ଶରଣଙ୍କ ଜୀବନୀ ଉପରେ ଆଲୋକପାତ କରାଯାଇଛି ।

୧୯୮୧ର 'ସପ୍ତଜ୍ୟୋତି' ସଂକଳନରେ ନାଟ୍ୟକାର ଗୋପାଳ ଛୋଟରାୟ, ସମାଜସେବୀ ନନ୍ଦକିଶୋର ଦାସ, ଇତିହାସବେତ୍ତା ଡକ୍ଟର ନବୀନ କୁମାର ସାହୁ, ସାହିତ୍ୟିକ ସୁଧାକର ପଟ୍ଟନାୟକ, ପ୍ରତ୍ନତତ୍ତ୍ୱବିତ୍ କେଦାରନାଥ ମହାପାତ୍ର, ଶିଳ୍ପୀଗୁରୁ ଜଗନ୍ନାଥ ମହାପାତ୍ର ଓ ନୃତ୍ୟଗୁରୁ ଭଗବାନ ସାହୁଙ୍କ ଜୀବନୀ ଓ କୃତି ସ୍ଥାନ ପାଇଛି ।

୧୯୮୨ର 'ସପ୍ତପୁଷ୍ପ' ସଂକଳନ ରସିକରାଜ ଫକୁରାନନ୍ଦ, ଗାୟକ ଭାସ୍କର ନିରଞ୍ଜନ କର, ମଞ୍ଚଗୁରୁ ଦୁର୍ଲ୍ଲଭଚନ୍ଦ୍ର ସିଂହ, ଶିଳ୍ପୀ ଶିରୋମଣି ଶ୍ରୀଧର ମହାପାତ୍ର, ବାଣୀବରପୁତ୍ର ରାମକୃଷ୍ଣ ନନ୍ଦ, ଚଳନ୍ତି ଚରକ କବିରାଜ ଅନନ୍ତ ତ୍ରିପାଠୀ ଶର୍ମା ଓ ସମାଜ ସେବକ ପଦ୍ମଶ୍ରୀ ମୋହନ ନାୟକଙ୍କ ଜୀବନୀ ଓ ସାଧନା ଉପରେ ଆଧାରିତ ।

୧୯୮୩ର 'ସପ୍ତରାଗ' ସଂକଳନରେ ଭାଷାବିଜ୍ଞାନୀ ଡକ୍ଟର କୁଞ୍ଜବିହାରୀ ତ୍ରିପାଠୀ, ଜନସେବୀ ଲମ୍ବୋଦର ପାଣିଗ୍ରାହୀ, କବି ପଦ୍ମଶ୍ରୀ ସଚ୍ଚିଦାନନ୍ଦ ରାଉତରାୟ, ଉତ୍କଳବନ୍ଧୁ ପି. ଭି. କୃଷ୍ଣମୂର୍ତ୍ତି, ଦୂରଦର୍ଶୀକଳାସ୍ରଷ୍ଟା ମନୋରଞ୍ଜନ ଦାସ, ସ୍ଥାପତ୍ୟଶିଳ୍ପୀ ଭୁବନେଶ୍ୱର ମହାପାତ୍ର ଓ ଛଉନୃତ୍ୟ ଗୁରୁ ଅନନ୍ତ ଚରଣ ସାୟୀଙ୍କ ଜୀବନୀ ଓ କୃତି ଉପରେ ଆଲୋକପାତ କରାଯାଇଛି ।

୧୯୮୪ର 'ସପ୍ତସୁମନ' ସଂକଳନରେ ସାହିତ୍ୟ ସୁଧାକର ଡଃ ଭୁବନେଶ୍ୱର ବେହେରା, ନାଟ୍ୟକାର ଭଞ୍ଜକିଶୋର ପଟ୍ଟନାୟକ, ଜନସେବକ

ଡଃ ଶରତ ଚନ୍ଦ୍ର ମିଶ୍ର, ମଞ୍ଜୁଶ୍ରୀ ସତ୍ୟନାରାୟଣ ପଣ୍ଡା, ସଙ୍ଗୀତ ଗୁରୁ ଶ୍ରୀ କ୍ଷିତୀଶ ଚନ୍ଦ୍ର ମୈତ୍ର, ଗବେଷକ ଡଃ ନଟବର ସାମନ୍ତରାୟ, ଛଉନୃତ୍ୟ-ଗୁରୁ ପଦ୍ମଶ୍ରୀ କେଦାର ନାଥ ସାହୁଙ୍କ ଜୀବନୀ ଓ କୃତି ଉପରେ ଆଧାରିତ ।

୧୯୮୫ ମସିହାରେ 'ପ୍ରସ୍ତୁତକ' ଜୀବନୀ ପୁସ୍ତକରେ ସଂଗଠକ ବାବୁଲାଲ ଦୋଶୀ, କଳାକାର ବାଞ୍ଛାନିଧି ଶତପଥି, ସାହିତ୍ୟିକ ଅନନ୍ତ ପ୍ରସାଦ ପଣ୍ଡା, ଗବେଷକ ଓ ସଂଗ୍ରାହକ ବିନୋଦ କାନୁନ୍‌ଗୋ, ସଙ୍ଗୀତ-ସାଧକ ଭୁବନେଶ୍ୱର ମିଶ୍ର, ଶିଳ୍ପଶିଳ୍ପୀ ଲକ୍ଷ୍ମୀନାରାୟଣ ଅଗ୍ନିହୋତ୍ରୀ ଓ ହାସ୍ୟ ସ୍ରଷ୍ଟା ବସନ୍ତ କୁମାର ଶତପଥିଙ୍କ ଜୀବନୀ ପ୍ରଦତ୍ତ ।

ଏବର୍ଷ ମଧ୍ୟ ସଂସଦ ତରଫରୁ ସମ୍ମାନିତ ପ୍ରତିଭାମାନଙ୍କୁ ପ୍ରଦତ୍ତ ଉପହାର "ଶ୍ରୀଜଗନ୍ନାଥଙ୍କ ସୁନାବେଶ" ପଞ୍ଚଦଶ ପ୍ରତିବର୍ଷ ପର ସଂସଦର ସଦସ୍ୟା ଶ୍ରୀମତୀ ସୁଜାତା ମହାନ୍ତିଙ୍କ ଦ୍ୱାରା ଅଙ୍କିତ । ଏଥିପାଇଁ ସଂସଦ ତରଫରୁ ସେ ଧନ୍ୟବାଦର ପାତ୍ରୀ ।

ଆମେ ଆଶାକରୁ, ଆମର ଏ ଉଦ୍ୟମ ଓଡ଼ିଶାର ପାଠକପାଠିକା-ମାନଙ୍କ ନିକଟରେ ଉତ୍କଳ ଜନନୀଙ୍କ ଏହି ପ୍ରତିଭାଶାଳୀ ସନ୍ତାନମାନଙ୍କର ମହତ୍ତ୍ୱ ସମ୍ପର୍କରେ ସାମାନ୍ୟ ସୂଚନା ଦେବାକୁ ମାନପତ୍ର ସହାୟକ ହେବ ଏବଂ ଏହି ଜୀବନୀ ସେମାନଙ୍କ ଗୁଣ କୀର୍ତ୍ତନରେ ସାହାଯ୍ୟ କରିପାରିବ ।

ଅବଶ୍ୟ ଆମର ଏ ଉଦ୍ୟମ ଯଥେଷ୍ଟ ନୁହେଁ । ଏ ଦିଗରେ ଆହୁରି ଅନେକ କିଛି କରିବାକୁ ଅଛି । ତା' ସତ୍ତ୍ୱେ ଆମର ବିଶ୍ୱାସ, ଏ ଜୀବନୀ ପ୍ରକାଶନ ଦିଗରେ ପ୍ରାଥମିକ ପଦକ୍ଷେପ ସ୍ୱରୂପ ଏହି ସଂକଳନଗୁଡ଼ିକ ଭବିଷ୍ୟତ ପାଇଁ ଆଲୋକ-ବର୍ତ୍ତିକାସଦୃଶ କାର୍ଯ୍ୟ କରିବ ।

ସ୍କୁଲ, କଲେଜ କର୍ମକର୍ତ୍ତା ଓ ପାଠକପାଠିକା ଏହି ସଂକଳନ ନିଯୁକ୍ତ ପାଠକଲେ ଏବଂ ସରକାରୀ ଉଦ୍ୟୋଗରେ ଏଗୁଡ଼ିକ ନିଯୁକ୍ତ ହୋଇପାରିଲେ ଆମେ ବିଶେଷ ଉପକୃତ ହେବୁ ।

॥ ଇତି ॥

କଟକ

ତା ୨୩-୩-୧୯୮୬

ସମ୍ପାଦକ ମଣ୍ଡଳୀ

# ଡକ୍ଟର ମନ୍ମଥନାଥ ଦାସ

ଡଃ ସଚ୍ଚିଦାନନ୍ଦ ମହାନ୍ତି

ବାଲେଶ୍ୱର ଜିଲ୍ଲାର ପ୍ରସିଦ୍ଧ ଶୈବପୀଠ ଚନ୍ଦନେଶ୍ୱର । ପୀଠ ସ୍ଥାନରୁ ଅଳ୍ପ ଦୂରରେ ଅବସ୍ଥିତ ମାଇନର ସ୍କୁଲ୍‌ଟିରେ ଆଖପାଖ ଦଶ ପନ୍ଦର କିଲୋମିଟର ଦୂରରୁ ପିଲାଏ ଆସି ବୋର୍ଡ଼ିଂରେ ରହି ପଢ଼ନ୍ତି । ସେଇମାନଙ୍କ ଭିତରୁ ପାଠ ସଙ୍ଗେ ସମ୍ପର୍କ ନ ରଖି ପୋଖରୀ ପହଁରା, ବଡ଼ ବଡ଼ ବୋଉଲ ଗଛରେ ଚଢ଼ି କୋଳି ତୋଳିବା ଆଦି ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟମାନଙ୍କରେ ବେଶୀ ମନୋନିବେଶ କରୁଥିବା 'ମନ' ବୋଲି ବଗୁଲିଆ ପିଲାଟିକୁ ସନ୍ଧ୍ୟାବେଳେ ହେଡ୍‌ପଣ୍ଡିତେ ଶାସନ କରିବାକୁ ଧରିଆଣିଲେ । କହିଲେ "ତୋ ବାପା ଯୋଉ ପକ୍‌କା ଘର ତିଆରି କରୁଛନ୍ତି ତୁ ବଡ଼ ହୋଇ ସେଇ କାନ୍ଥରୁ ଖଣ୍ଡିଏ ଖଣ୍ଡିଏ ଇଟା କାଢ଼ି ପେଟ ପୋଷିବୁ । ବୁଝିଲୁ, ତୋ ଦେହ ପାଠପଢ଼ା ହେବ ନାହିଁ । ଯା' ଏଥର ପୋଥିରେ ଡୋର ଦେଇ ଘରକୁ ଫେରି ଯା ।"

ବାଡ଼ିଖଣ୍ଡେ ହାତରେ ଧରି ସେଇ ବାଟ ଦେଇ ବୁଲି ଯାଉଥିଲେ ଅବସରପ୍ରାପ୍ତ ପ୍ରଧାନ ଶିକ୍ଷକ ହୃଦୟନାଥ ବାବୁ । ସେ ଥିଲେ ପିଲାଟିର ନାନାଙ୍କର ମଧ୍ୟ ଗୁରୁ । ପଚାରିଲେ, "ଶ୍ରୀଧର ବାବୁ, କାହା ଉପରେ ରାଗୁଛନ୍ତି କି ?"

—"ଏଇ ମଧୁସୂଦନ ଦାସଙ୍କ ପୁଅ ମନ୍ମଥ । ଏଭଳି ଏ ଦୁଷ୍ଟ ପିଲା ଯେ ମାଆ ସରସ୍ୱତୀ ତା'ଠାରୁ କରଛଡ଼ା ଦେଇ ଦୂରରେ ରହିବେ ।"

ଡକ୍ଟର ଛୁଡ଼ା ହୋଇ ହୃଦୟେଶ୍ୱରୁ ଟିକଟି ମୁହଁକୁ ଚୁମ୍ବିଲେ । ଅତି ଶାନ୍ତକଣ୍ଠରେ କହିଲେ, "ମା ହେ ସୁଧିଶଦେବୀ, ଏ ପିଲାକୁ ଭଟା ଚଳିବାକୁ ପଡ଼ିବ ନାହିଁ । ଏ ପରା ମଦନମୋହନଙ୍କ ନାତି ତାଙ୍କର ପୁଣ୍ୟବଳରୁ ଦେଖିବ ଏ ସୁଖଭୋଗ କରିବ । ପାଠ ବି ପଢ଼ିବ ।"

ସେ ଅଞ୍ଚଳ ଫୁଲବଣି ଗାଁର ଜଣେ ପ୍ରାତଃସ୍ମରଣୀୟ ବ୍ୟକ୍ତି ଥିଲେ ସ୍ୱର୍ଗତ ମଦନମୋହନ ଦାସ । ମନ୍ମଥଙ୍କ ଜନ୍ମ (୧୯୨୬ ଜାନୁଆରୀ ୫)ର ବହୁ ପୂର୍ବରୁ ସେ ସ୍ୱର୍ଗବାସୀ ହୋଇଥିଲେ ହେଁ ତଥାପି ସକାଳୁ ଶେଯରୁ ଉଠି ତାଙ୍କ ନାମ ଧରିଲେ ଦିନଟି ଭଲରେ କଟିବ ବୋଲି ଲୋକ ସକାଳୁ ସେ ପୁଣ୍ୟାତ୍ମାଙ୍କ ନାମ ଉଚ୍ଚାରଣ କରୁଥିଲେ । ସେ ଏପରି ଦାନୀ ଥିଲେ ଯେ ଗୋଟିଏ ନିଃସ୍ୱ ବ୍ରାହ୍ମଣ ପରିବାରର ସମ୍ପତ୍ତି ଓ ଘରଦ୍ୱାର ରକ୍ଷା କରିବା ପାଇଁ ସେ କାଳରେ ଅତ୍ୟାଚାରୀ ଜମିଦାର ହାତରେ ସାତ ଶହ ଟଙ୍କା ଅକାତରରେ ଅର୍ପଣ କରିଥିଲେ ।

ପ୍ରତିଭାମୟ ଫକୀରଚରଣ ଓଡ଼ିଶାରୁ ଶହ ଶହ ଶ୍ରମିକଙ୍କୁ ନେଇ ମହାବଳ ବାଘଭରା ଦୁର୍ଗମ ସୁନ୍ଦରବନର ଯାତର ଦ୍ୱୀପ ଆବାଦ କରାଇ ସେମାନଙ୍କ ନାମରେ ଶହ ଶହ ଏକର ଜମିର ମାଲିକାନା କରାଇ ଦେଲେ । ନିଜେ ଫକୀରଚରଣ ପ୍ରଚୁର ଭୂସମ୍ପତ୍ତିର ମାଲିକ ହୋଇ 'ଚକଦାର' ରୂପେ ପରିଚିତ ହେଲେ । ଗଙ୍ଗାର ବନ୍ୟା ଓ ସମୁଦ୍ର ଜୁଆରରୁ ରକ୍ଷା ପାଇବା ପାଇଁ ସରକାରଙ୍କଦ୍ୱାରା ନିର୍ମିତ ହେଉଥିବା ବନ୍ଧବାଡ଼ର ନିର୍ମାଣ ଭାର ମଧ୍ୟ ନେଇଥାନ୍ତି ସେ । ତାଙ୍କର ମାଟିଖୋଳା ହିସାବ ଭୁଲ୍ ହୋଇଛି ବୋଲି ଥରେ ଜଣେ ଇଂରେଜ ଇଞ୍ଜିନିଅର ଦୋଷାରୋପ କରାଇବାରୁ 'କଟକୀ ଓଡ଼ିଆ ଅବଧାନ ପାଖରୁ ଶିଖା ଅଙ୍କ କେବେ ଭୁଲ୍ ହୋଇ ନ ପାରେ' ବୋଲି ସାହେବ ପାଖରେ ଯୁକ୍ତି କରି ଓ ନିଜର କଥାର ସତ୍ୟତାର ପ୍ରମାଣ ଦେଇ ସେହି ହିସାବ ଲେଖା ତାଳପତ୍ର ପୋଥିବଣ୍ଡାରେ ସାହେବଙ୍କୁ ପ୍ରହାର କଲେ ସ୍ୱାଭିମାନୀ ଫକୀରଚରଣ । ସାହେବଙ୍କୁ ମାରିବା ଅପରାଧରେ ସରକାରୀ ଲୋକଙ୍କଦ୍ୱାରା ଗିରଫ ହେବା ପୂର୍ବରୁ ଗଙ୍ଗାନଦୀ ପାରହୋଇ ଆପଣା ଘରକୁ ଚାଲିଆସିଥିଲେ ।

ଏହିପରି ପିତା, ପିତାମହ ଓ ପ୍ରପିତାମହଙ୍କ କଥାରେ ମନ୍ମଥ। ହୃଦୟବାବୁଙ୍କ ସନ୍ଧ୍ୟାର ସେ ଉକ୍ତି ମନରେ ତାଙ୍କର ରେଖାପାତ କଲା ଗଭୀର ଭାବରେ। ପୂର୍ବପୁରୁଷଙ୍କ ପୁଣ୍ୟଫଳ ଉତ୍ତର ପୁରୁଷଙ୍କୁ ସୃଷ୍ଟି କରେ ଏପରି ଏକ ଧାରଣା ମନ୍ମଥଙ୍କ ମନରେ ଜନ୍ମିଲା।

ମାଇନର ପାଶ୍ ପରେ ବାଲେଶ୍ୱର ଜିଲ୍ଲାସ୍କୁଲରେ ୧୯୩୭ ରେ ନାମ ଲେଖାଇଲେ ମନ୍ମଥନାଥ। ସେଠାରେ ସ୍କୁଲର୍ଟିର ରହଣି ମଧ୍ୟରେ ଇବ୍ରାହିମ୍ ସୁହ୍ରାବର୍ଦ୍ଦୀ, ରାୟସାହେବ ଖ୍ରୀମଚେନ ରାଉତ, ମନ୍ମଥନାଥ୍ ନନ୍ଦୀଙ୍କ ପରି ପ୍ରଧାନ ଶିକ୍ଷକ ତଥା ଶିକ୍ଷକ ମନମୋହନ ପଟ୍ଟନାୟକଙ୍କ ବ୍ୟକ୍ତିତ୍ୱ ତାଙ୍କୁ ପ୍ରଭାବିତ କଲା। ହେଡ୍ମାଷ୍ଟର୍ ସୁପରିଣ୍ଟେଣ୍ଡେଣ୍ଟ ସରୋଜ କାନୁନ୍‌ଗୋଙ୍କ ବ୍ୟକ୍ତିଗତ ଆଦର୍ଶ, ନିଷ୍ଠା, ନୃସଂହଳତା ଓ ଉଦାର ବ୍ୟବହାର ଉଦ୍ଧତ ଓ ଦୁଷ୍ଟ ପିଲଙ୍କୁ ସୁଦ୍ଧା ଶିଷ୍ଟ ହେବା ପାଇଁ ବାଧ୍ୟ କରୁଥିଲା।

୧୯୩୮ ରେ ବଡ଼ଲାଟ ଲର୍ଡ଼ ଲିନ୍‌ଲିଥ୍‌ଗୋଙ୍କ ଓଡ଼ିଶା ଆଗମନ କାଳରେ ତାଙ୍କୁ ସମ୍ବର୍ଦ୍ଧନା ପାଇଁ ଓଡ଼ିଶାର ବଡ଼ବଡ଼ ଜିଲ୍ଲା ସ୍କୁଲମାନଙ୍କରୁ ବୟସ୍କାଉଟ୍‌ମାନଙ୍କୁ ବାଛି ବାଛି ନିଆଯାଇଥିଲା ଏବଂ ସେହି ସୂତ୍ରରେ ବାଲେଶ୍ୱର ଜିଲ୍ଲାସ୍କୁଲରୁ ବାଛା ହୋଇ ବଡ଼ଲାଟଙ୍କୁ ଦୂରରୁ ଓ ନିକଟରୁ ଦେଖିବା ସୁଯୋଗ ପାଇଲେ ମନ୍ମଥ। ମାତ୍ର ସେହି ରାଜକର୍ମଚାରୀଙ୍କ ପରିବର୍ତ୍ତେ ତାଙ୍କ ମନରେ ଜାତ କଲା ବିତୃଷ୍ଣା।

ସେହି ବର୍ଷ ପୁରୀ ଜିଲ୍ଲା ଡେଲଙ୍ଗକୁ ଆସିଲେ ମହାତ୍ମାଗାନ୍ଧି। ତାହାଙ୍କ ଦର୍ଶନ ପାଇଁ ମନ୍ମଥ ଦୁଇ ତିନିଜଣ ଛାତ୍ର ସାଥୀଙ୍କୁ ଧରି ରେଳବାଟର ଶନି ତିନିଥରେ ଯାଇ ହାଜର। ମାତ୍ର ଲୋକାରଣ୍ୟ ଭିତରେ ମହାତ୍ମାଙ୍କ ଦର୍ଶନ ଆଶା ନ ପାଇ ଜଣେ ସ୍ୱେଚ୍ଛାସେବକଙ୍କୁ ଯାଇ ପରାମର୍ଶ ମାଗିଲେ। ସେ କହିଲେ, "ଯଦି ମହାତ୍ମାଙ୍କୁ ଦେଖିବାକୁ ଇଚ୍ଛା, ତେବେ ରାତି ପାହିବା ପୂର୍ବରୁ ଏ ପୋଖରୀ ମଝିରେ ଚାଲିଯାଅ। ତାହାରି ତାଙ୍କ କୁଡ଼ିଆରୁ ବାହାରି ଆଉପାଖ ଘାଟରେ ଥିବା ପଥର ଉପରେ ଯେତେବେଳେ ଲୁଗା କାଚିବେ ତାଙ୍କୁ ଦେଖିପାରିବେ।" ଶେଷରେ ସେପରି କରି, ବାପୁଜୀଙ୍କ ଦର୍ଶନ ଲାଭ କଲାରୁ ଆଜି ଜୀବନର ସ୍ମୃତି ରହି

ପ୍ରତୀକ୍ଷା କରିବା କଷ୍ଟ ବାଧିଲା ନାହିଁ ବରଂ ପ୍ରାଣ ଆନନ୍ଦରେ ନାଚି ଉଠିଲା ।

ଆଜି କେତୋଟି ଦିନ ପରେ ନେତାଜୀ ସୁଭାଷଚନ୍ଦ୍ର ବୋଷ ଆସିଲେ ବାଲେଶ୍ୱର । ତାଙ୍କୁ ସୁଶୋଭିତ ଶୋଭାଯାତ୍ରାରେ ଏକ କାର୍‌ରେ ବସାଇ ନିଆ ଯାଉଥାଏ । ସେହି ସ୍ୱର୍ଣ୍ଣକାଳିଆ ରଜନୀ ଗାଡ଼ିରେ ଉଠିବାପାଇଁ ବାହାରୁଥିବା ଘଂଟାଏ କାଠ ପାହାଚଟି ଉପରେ ତାଙ୍କୁ ଝପିଯିବା ଭଳିକୁ ଅପେକ୍ଷା କରି ଠିଆ ହୋଇଥାନ୍ତି ମନ୍ମଥ । ତାଙ୍କୁ ସେଠାରୁ ନିରାପଦ ସ୍ଥାନକୁ ଆଣିବାକୁ ଉଦ୍ୟତ ହୋଇ ସଫଳ ହେଉଥିବା ସ୍ୱେଚ୍ଛାସେବକଙ୍କୁ ରୁହିଁ ମନେ ମନେ ଭାରି ଖୁସି ହେଉଥାନ୍ତି ସେ ।

ଗୋଟିଏ ବର୍ଷ ଭିତରେ ଏପରି ଘଟିଥିବା ଘଟଣା ଗୁଡ଼ିକ ତାଙ୍କ ମନରେ ଅଙ୍କା ହୋଇ ରହିଲା ।

୧୯୪୨ । ରେଭେନ୍‌ସା କଲେଜରେ ଆଇ. ଏ. ପଢ଼ିବାକୁ ଆସି କେଉଁ କେଉଁ ବିଷୟ ନେଲେ ଭଲ ହେବ ବୋଲି ଜଣେ ତୃତୀୟ ବର୍ଷର ପରିଚିତ ଛାତ୍ରଙ୍କୁ ପଚାରିବାରୁ ସେ କହିଲେ, "ବିଜ୍ଞାନ ନ ପଢ଼ି ଯଦି କଳା ନେଲ, ତେବେ ଅର୍ଥନୀତି ବିଷୟଟି ନିଅ, ତା'ହେଲେ ଅଧ୍ୟାପକ ସଦାଶିବ ମିଶ୍ରଙ୍କ ଲେକ୍‌ଚର ଶୁଣିବ ।" ଶେଷକୁ ଜୟ ହେଲା ଅର୍ଥନୀତିର । ସଦାଶିବ ବାବୁଙ୍କ ଲେକ୍‌ଚର ଏପରି ଆକର୍ଷଣୀୟ ହୁଏ ଯେ ଦେହରେ ପ୍ରବଳ ଉତ୍ତାପ ତଥା ଜ୍ୱର ସତ୍ତ୍ୱେ ତାଙ୍କ କ୍ଲାସରେ ଉପସ୍ଥିତ ରହିବା ପାଇଁ ସ୍ୱତଃ ପ୍ରେରଣା ଆସେ ।

ଆସିଲା ଅଗଷ୍ଟ ମାସର ଭାରତ ଛାଡ଼ ଆନ୍ଦୋଳନ । ପଶ୍ଚିମ ଛାତ୍ର ବାସର ଗୋଟିଏ କୋଠରୀରେ ହାଇଡ୍ରେଣ୍ଟ ଜ୍ୱର ଖାଲି ଦେହରେ ଶୋଇଥିବା ଗଙ୍ଗାକୃଷ୍ଣ ଅଲ୍ଲୁଗୁପ୍ତ ପ୍ରଥମ ବାର୍ଷିକ ଶ୍ରେଣୀର ଛାତ୍ରଟି କାନରେ ଶୁଣିଲା ସେହି ଆନ୍ଦୋଳନଜନିତ କୋଳାହଳ । ଛାତ୍ରାବାସ ସଂଲଗ୍ନ କଲେଜ ଅଫିସ ଭିତରୁ ମାଡ଼ ଆସୁଥିବା ଧୂଆଁ କୋଳି ଝଳର ନିକାଗରେ ପିଲମାନେ କାଏ କୁଅଡ଼େ ଦଉଡ଼ ଥାଆନ୍ତି । କୋଳାହଳର କେନ୍ଦ୍ର ହେଉଥିଲା ଅଫିସଘରେ ଅଗ୍ନିସଂଯୋଗ । ହାଇଡ୍ରେଣ୍ଟ ପିନ୍ଧି ଅଫିସ ଘର ଧୂଆଁ

ଭିତରୁ ବାହାରି ଆସିଲା ବେଳକୁ ତାଙ୍କୁ ଜଣେ ବୟସ୍କ ବ୍ୟକ୍ତି ଅଗ୍ନି ସଂଯୋଗକାରୀ ବୋଲି ସନ୍ଦେହ କରି ନାମ ପଚାରି ବୁଝିଲେ । ମାତ୍ର ଏତେ ସୁଖଣ୍ଡେ ଅଳ୍ପ ବୟସର ଟୋକାଦ୍ୱାରା ଏ କାମ ହୋଇପାରିବ ନାହିଁ ବୋଲି ଅନୁସନ୍ଧାନକାରୀ ପୋଲିସ ଅଫିସରଙ୍କ ମନକୁ ଏ କଥା ନ ପାଇବାରୁ ତାଙ୍କୁ ଛାଡ଼ିଦେଲେ । କିନ୍ତୁ ଏ ଘଟଣା ପରଠାରୁ ସେ ଫେରାର ଚିହ୍ନିଲେ ।

କିଛିଦିନ ପରେ ରେଭେନସା କଲେଜରୁ ବାହାରିଲେ ଛାତ୍ରମାନଙ୍କର ବରିଷ୍ଠ ବନ୍ଧୋଭ ଯାତ୍ରା ଓ ତାର ଆଗ ଧାଡ଼ିରେ ରହିଥିଲେ ମନ୍ମଥନାଥ । ଶୋଭାଯାତ୍ରା ମେଡ଼ିକାଲ ସ୍କୁଲ ପ୍ରାଙ୍ଗଣରେ ପହଞ୍ଚିବାବେଳକୁ ଅଟରେ ଉହାଳନ୍ତି ପୋଲିସବାହିନୀ । ପୋଲିସ ସାହେବ ହାଟେଗ୍ରୀଭସ୍ ଲାଠି ଚାଳ ପାଇଁ ଆଦେଶ ଦେଲେ । ଦୁଇ ପାଖରେ ଥିବା ଦୁଇ ଜେଙ୍ଗା ଛାତ୍ରଙ୍କ ମୁଣ୍ଡରେ ଠେଙ୍ଗା ପଡ଼ିଲା ସିନା ମାତ୍ର ଆକାରରେ କ୍ଷୁଦ୍ର ଥିବାରୁ ସେମାନଙ୍କ ମଝିରେ ରହି ରକ୍ଷା ପାଇଗଲେ ସେ ।

କଲେଜ ବନ୍ଦ ହେଲା । ଆପଣା ଅଞ୍ଚଳରେ ଯାଇ ଅନ୍ୟାନ୍ୟ ଛାତ୍ରଙ୍କ ସଙ୍ଗେ ମିଶି ଆନ୍ଦୋଳନ ପାଇଁ ସଜ୍ଞ୍ଜାପିତ ଆୟୋଜନ କଲେ । ଭାରତଛାଡ଼ ଆନ୍ଦୋଳନ ସାରା ଦେଶରେ ଯେଉଁ ଅଭୂତପୂର୍ବ ଉତ୍ତେଜନା ସୃଷ୍ଟି କରିଥିଲା, ସେଇ ଜାତିପ୍ରାଣ ବାପୁଜୀଙ୍କ ଆହ୍ୱାନରେ ଅସଂଖ୍ୟ ଲୋକ ଉନ୍ମତ୍ତ ହୋଇ ଆନ୍ଦୋଳନରେ ଝାସ ଦେଉଥିଲେ । ଦିନେ ଆସି ଘରେ ପହଞ୍ଚିଲେ ପୋଲିସ ଦାରୋଗା । ତାଁ ନିକଟବର୍ତ୍ତୀ ଜଣେ ଛାତ୍ର ଶଶିକାନ୍ତ ଭଞ୍ଜଙ୍କୁ ଗିରଫ କରିବାକୁ । ମାତ୍ର ତାଙ୍କ କଥାବାର୍ତ୍ତାରୁ ଜଣାପଡ଼ୁଥାଏ ମନ୍ମଥଙ୍କୁ ମଧ୍ୟ ଗିରଫ କରିବେ । ପ୍ରବଳ ବର୍ଷା ଆରମ୍ଭ ହେଲା । ଦାରୋଗା ଆଉ ଏକ ଗାଁକୁ ଗଲାବେଳେ ପରଦିନ ଫେରି ଆସିବାର ଅଶୁଭ ସଙ୍କେତ ଦେଇଗଲେ । କିନ୍ତୁ ମାତ୍ର କେତେ ଘଣ୍ଟା ଭିତରେ ଆରମ୍ଭ ହେଲା ୧୯୪୨ ର ପ୍ରଳୟଙ୍କରୀ ବାତ୍ୟା । ଉତ୍ତର ବାଲେଶ୍ୱର ଓ ଦକ୍ଷିଣ ମେଦିନୀପୁରରେ ଘରଦ୍ୱାର ସହିତ ଉଦ୍ଭିଦ ବୃକ୍ଷମାନ ଭାଙ୍ଗି ସବୁ ନିଃଶେଷ କରିଦେଲା । ଶଶିବାବୁଙ୍କ ସହିତ ରିଲିଫ୍ କାମରେ ଲାଗିଥିବା ବେଳେ ଦେଖାହେଲେ ସେବାବ୍ରତୀ ଈଶ୍ୱରଲାଲ ବ୍ୟାସ । ହାତୀବାର

ଧରିଥିବା ଟଙ୍କାଟିକୁ ଦେଖାଇ ସେ କହିଲେ, "ଦେଖ ବାବା, ଏ ଟଙ୍କାର ଦୁଇଟି ପାଖରର ପ୍ରତ୍ୟେକ ଦିଗର ସ୍ୱତନ୍ତ୍ର ମୂଲ୍ୟ ରହିଛି । ଏହାକୁ ଭୋଗ କଲେ ସୁଖ ପାଇବ ମାତ୍ର ତ୍ୟାଗ କଲେ ଶାନ୍ତି ପାଇବ ।" ତାଙ୍କ ପର ଜୀବନରେ ଉପରୋକ୍ତ କଥାପଦର ଉପଯୋଗିତା ବାସ୍ତବରେ ବରଜ ।

କେତେ ସପ୍ତାହ ବନ୍ଦ ରହିବା ପରେ ପୁଣି ରେଭେନ୍ସା କଲେଜ ଖୋଲିଲା । ପାଠପଢ଼ି ଚାଲିଲା । ଭାରତଛାଡ଼ ଆନ୍ଦୋଳନ କ୍ରମେ କମି କମି ଆସିଲା ।

୧୯୪୩ ମସିହାରେ ଆସିଲା ସୁବର୍ଣ୍ଣରେଖାର ପ୍ରବଳ ବନ୍ୟା ସାଙ୍ଗକୁ ବଙ୍ଗଦେଶର ସର୍ବଗ୍ରାସୀ ଦୁର୍ଭିକ୍ଷ । ଉତ୍ତର ବାଲେଶ୍ୱରରେ ସେହି ଦୁର୍ଭିକ୍ଷର ପ୍ରକୋପରେ ବୁଭୁକ୍ଷୁମାନଙ୍କର ମୃତ୍ୟୁ ଦୃଶ୍ୟ ସ୍ୱଚକ୍ଷୁରେ ଦେଖି ମନ୍ମଥ ଆଉ ଧୈର୍ଯ୍ୟ ଧରି ପାରିଲେ ନାହିଁ । ନିଜ ଘରେ ମଧ୍ୟ ଖାଇବାକୁ ଧାନ ଅଭାବ । ସୋରୋଠାରେ ଥିବା ତାଙ୍କ ଅନ୍ତରଙ୍ଗ ବନ୍ଧୁ ହରପ୍ରସାଦ ମହାପାତ୍ରଙ୍କୁ ଖବର ପଠାଇବାରୁ ସେ ଶହ ଶହ ମହଣ ଧାନ ପଠାଇଲେ । ଶାନ୍ତି ଓ ସୈନିକମାନଙ୍କରେ ସେହି ଧାନ ବୋହି ନେଇ ମନ୍ମଥ ଦୁର୍ଭିକ୍ଷ ପୀଡ଼ିତ ଜନତା ମୁଖରେ ଦେଇ ଦେଲେ । ପରବର୍ତ୍ତୀକାଳରେ ସେହି ହରପ୍ରସାଦ ଓଡ଼ିଶାର ଜଣେ ମନ୍ତ୍ରୀ ହୋଇଥିଲେ ।

୧୯୪୫ ରେ ଆଇ. ଏ. ପାଶ ହେଲା । ପରୀକ୍ଷା ଫଳ ବାହାରିବା ପୂର୍ବରୁ ୧୯ ବର୍ଷ ବୟସରେ ବାଲ୍ୟବିବାହ ପ୍ରଥାମତେ ସପ୍ତଦଶ ବର୍ଷୀୟା କନେ ଶ୍ରୀ ରାଜଶ୍ରୀଙ୍କ ସଙ୍ଗେ ଘଟିଲା ଶୁଭ ପରିଣୟ ।

ଇତିହାସ ଅନର୍ସ ଓ ଅର୍ଥନୀତି ବିଷୟ ନେଇ ରେଭେନ୍ସାରୁ ପାଶ କଲେ ବି. ଏ. । ରାଜନୀତି ଠାରୁ ଦୂରେଇ ରହିବା ସମ୍ଭବ ହେଉ ନଥିଲା । ତେଣୁ ରାଜନୀତିର ଆକର୍ଷଣରେ ଛାତ୍ର ଫେଡେରେସନରେ ମିଶିଲେ । ଛାତ୍ରନେତା ରାମଚନ୍ଦ୍ର ରଥଙ୍କ ଭାଷଣରେ ମୁଗ୍ଧ ହୋଇ ତାଙ୍କର ଶୈଳୀ ଅନୁକରଣରେ ଭାଷଣ ଦେବା ଅଭ୍ୟାସ କଲେ ।

ଆଜାଦହିନ୍ଦ ଫୌଜର ସେନାପତି ଓ ସୈନ୍ୟମାନଙ୍କ ବନ୍ଦୀଦଶାରୁ ମୁକ୍ତିପାଇଁ ଭାରତ ସାରା ଦେଖାଦେଲା ବିକ୍ଷୋଭ । କଟକ ନଗରୀର କେନ୍ଦ୍ରସ୍ଥଳରେ ହରେକୃଷ୍ଣ ମହତାବଙ୍କ ସଭାପତିତ୍ୱରେ ଚାଲିଥିବା ଏକ

ସଭାରେ ଛାତ୍ର ପ୍ରତିନିଧିଭାବେ ମନ୍ମଥଙ୍କ ଭାଷଣ ନେତାମାନଙ୍କୁ ଏପରି ଅଭିଭୂତ କଲା ଯେ ଖାଲି ଘନ ଘନ କରତାଳିରେ ସଭାସ୍ଥଳ ମୁଖରିତ ହୋଇଉଠିଲା ।

ସମ୍ଭ୍ରାନ୍ତ ମହତାବ ବାବୁ ତାଙ୍କୁ ଡ଼ାକି ତାଙ୍କ ପରିଚୟ ନେଲେ । ଶ୍ରୀମତୀ ସୁଭଦ୍ରା ମହତାବ ଲବଣ ସତ୍ୟାଗ୍ରହ ବେଳେ ପୋଲିସର ଦୃଷ୍ଟି ଏଡ଼ାଇ ତାଙ୍କର ଘରେ ଯେ ଆତ୍ମଗୋପନ କରିଥିଲେ, ସେକଥା ଆଲୋଚନା ଛଳରେ ଜଣାପଡ଼ିବାରୁ ଆତ୍ମୀୟତା ବଢ଼ିଉଠିଲା । ଶ୍ରୀମତୀ ସୁଭଦ୍ରାଦେବୀ ତାଙ୍କ ଘରେ ଲୁଚିଥିବାବେଳେ ମନ୍ମଥଙ୍କର ବୟସ ଥିଲା ମାତ୍ର ପାଞ୍ଚବର୍ଷ । ହେଲେ ହେଁ ସେକଥା ତାଙ୍କର ସ୍ପଷ୍ଟ ମନେ ଥିଲା ।

୧୯୪୬ । ଦେଖିବାକୁ ଯାଆନ୍ତି କଟକ ମେଡ଼ିକାଲରୁ ଅସୁସ୍ଥ ସୌରେନଦା'ଙ୍କୁ (ସୌରେନ ମିଶ୍ର) । ସେ ଉପଦେଶ ଦିଅନ୍ତି, ଏମ୍‌. ଏ. ନ ପଢ଼ି ରାଜନୀତି କର । ତେଣେ କଲେକ୍ଟର ବଡ଼ମାମୁଁ କାଳିକଙ୍କର ସାମଲ ଡେପୁଟି ପଦ ପାଇଁ ଦରଖାସ୍ତ କରିଥାନ୍ତି । ରାଜନୀତି କିମ୍ବା ଚାକିରି କୌଣସିଥିରେ ଆଗ୍ରହ ନ ଥିବାରୁ ଅଧିକ ଜ୍ଞାନ ଆହରଣ ନିମନ୍ତେ ଚାଲିଲେ ଏଲାହାବାଦ ବିଶ୍ୱବିଦ୍ୟାଳୟରେ ଏମ୍‌. ଏ. ପଢ଼ିବା ପାଇଁ ।

୧୯୪୬ ଜୁଲାଇରୁ ୧୯୪୮ ଏପ୍ରିଲ ପର୍ଯ୍ୟନ୍ତ ଦୁଇବର୍ଷ ଏଲାହାବାଦରେ ରହିଲେ । ସେତେବେଳେ ସେ ସ୍ଥାନ ଥାଏ ଜାତୀୟ କଂଗ୍ରେସର ଏକ ମୁଖ୍ୟ କର୍ମସ୍ଥଳୀ । ସ୍ୱାଧୀନତା ସଂଗ୍ରାମର ଶେଷ ପର୍ବ ଏବଂ ସ୍ୱାଧୀନତା ପ୍ରାପ୍ତିପରେ ପ୍ରଥମ ବର୍ଷ ଏହି ବଡ଼ ସନ୍ଧି କ୍ଷଣରେ ଭାରତର ପ୍ରାୟ ପ୍ରତ୍ୟେକ ମହାନ ନେତାଙ୍କୁ ସେଠାରେ ଦେଖିବାକୁ ପାଉଥିଲେ ଏବଂ ସେମାନଙ୍କ ଭାଷଣ ଶୁଣିଥିଲେ ସେ । ସ୍ୱାଧୀନତା ପ୍ରାପ୍ତିର କେତେକ ମାସ ପୂର୍ବରୁ ତାଙ୍କ ଜୀବନର ପ୍ରଥମ ପୁସ୍ତକ ଏଲାହାବାଦରେ ପ୍ରକାଶ କରିଥିଲେ "Westerners in the East" । ୧୯୪୭ ଅଗଷ୍ଟ ୧୫ ତାରିଖର ରାତି ଏକ ଅପୂର୍ବ ଓ ଅବିସ୍ମରଣୀୟ ଦୃଶ୍ୟ ଧାରଣ କରିଥିଲା । ମହାତ୍ମା ଗାନ୍ଧିଙ୍କର ଏକ ସୁବିଶାଳ ଚିତ୍ର ସହରର କେନ୍ଦ୍ର ସ୍ଥଳରେ ଆଲୋକ ମାଳାରେ ସୁଶୋଭିତ ଥାଏ ।

ଦିନକର ଘଟଣା । ସ୍ୱାଧୀନତା ଆସି ସାରିଛି । ମହାତ୍ମା ଗାନ୍ଧି ସେଦିନ କଲିକତାରୁ ଦିଲ୍ଲୀ ଫେରିବେ । ଏଲାହାବାଦ ଷ୍ଟେସନରେ ଟ୍ରେନ୍‌

ପହଞ୍ଚିବ ଦିନ ଗୋଟାଏବେଳେ । ଷ୍ଟେସନରେ ଗାନ୍ଧିଙ୍କୁ ଦେଖିବାପାଇଁ ପ୍ରବଳ ଆଗ୍ରହ ହେବାରୁ ଅନ୍ୟ ସହପାଠୀମାନଙ୍କୁ ସାଙ୍ଗରେ ଯିବା ପାଇଁ ଅନୁରୋଧ କଲେ । ଜଣେ କହିଲେ "ଗାନ୍ଧିଙ୍କୁ ଦେଖିବା ଦିନ କ'ଣ ଶେଷ ହୋଇ ଯାଉଛି । ପରୀକ୍ଷା ପରେ ତାଙ୍କୁ ଭଲ ଭାବରେ ଦେଖିବୁ ।"

ଆଉ କାହାକୁ ଅପେକ୍ଷା ନ କରି ଏକାକୀ ଚାଲିଲେ ଷ୍ଟେସନ । ଗାଡ଼ି ଆସିବା ପାଇଁ ଅନେକ ସମୟ ବାକି ଥାଏ । କିନ୍ତୁ ଷ୍ଟେସନରେ ପହଞ୍ଚିଲାବେଳକୁ ପାଦ ରଖିବା ପାଇଁ ସ୍ଥାନ ନାହିଁ । ଚାରିଆଡ଼େ ଲୋକାରଣ୍ୟ । ବାଧ୍ୟ ହୋଇ ପ୍ଲାଟଫର୍ମ ବାହାରେ ରେଳ ଲାଇନ୍ କଡ଼ରେ ଛିଡ଼ା ହୋଇ ଚାହିଁଥିଲେ । ଗାଡ଼ି ଧୀରେ ଧୀରେ ଆସିଗଲା । ଡବାଗୁଡ଼ିକ ଗୋଟିକ ପରେ ଗୋଟିଏ ଧୀରେ ଧୀରେ ପ୍ଲାଟଫର୍ମ ଭିତରକୁ ଆଗେଇ ଚାଲିଥାଏ । ପ୍ରତ୍ୟେକ ଡବା ଦ୍ୱାରରେ ବିଶିଷ୍ଟ ନେତା ଜଣେ ଜଣେ ଛିଡ଼ା ହୋଇଥାଆନ୍ତି । କିନ୍ତୁ ଗାନ୍ଧିଙ୍କୁ ଦେଖିବାକୁ ପାଇଲେ ନାହିଁ । ଟ୍ରେନ୍ ଶେଷକୁ ବନ୍ଦ ହେଲା । ହଠାତ୍ ଦେଖିଲାବେଳକୁ ପ୍ଲାଟଫର୍ମ ବାହାରେ ଥିବା ପ୍ରାୟ ଶେଷ କମ୍ପାର୍ଟମେଣ୍ଟ ମଧ୍ୟରେ ବସିଛନ୍ତି ମହାତ୍ମା ଗାନ୍ଧି । କବାଟ ଖୋଲିଥାଏ । ମନ୍ତ୍ରମୁଗ୍ଧ ପରି ଡବା ଭିତରକୁ ସେ ଉଠିଲେ । ମୁହୂର୍ତ୍ତକ ପାଇଁ ଗାନ୍ଧୀଙ୍କ ଆଗରେ ଛିଡ଼ା ହୋଇ ତାଙ୍କୁ ଦେଖିଲାବେଳକୁ ସଙ୍ଗେ ସଙ୍ଗେ ଆସିଗଲେ ଅନେକ ବ୍ୟକ୍ତି, ବିଶେଷତଃ ଶିଖମାନେ । ସେମାନଙ୍କ ଠେଲାପେଲାରେ ପଛ ପଟ କବାଟ ଦେଇ ତଳକୁ ଡେଇଁ ପଡ଼ି ସାମାନ୍ୟ ଆହତ ହେଲେ । ତଥାପି ବାହାରେ ରହି ଗାଡ଼ି ଛାଡ଼ିଲା ପର୍ଯ୍ୟନ୍ତ ଗାନ୍ଧିଙ୍କୁ ଚାହିଁ ରହିଥିଲେ ।

ଏଲାହାବାଦ ପଥରେ ଗାନ୍ଧିଙ୍କର ତାହା ହିଁ ଥିଲା ଶେଷ ଯାତ୍ରା । ୧୯୪୮ ମସିହା ଜାନୁଆରୀ ୩୦ ତାରିଖ । ଛାତ୍ରାବାସରେ ସେଦିନ ସନ୍ଧ୍ୟାବେଳେ ଭାଷଣ ଦେବାକୁ ଆସିଥିଲେ ଏଲାହାବାଦର ବିଶିଷ୍ଟ ଆଇନଜ୍ଞ ଓ ରାଜନୀତିଜ୍ଞ ଡକ୍ଟର କୈଳାସନାଥ କାଟ୍‌ଜୁ ! ସେତେବେଳକୁ ସେ ଓଡ଼ିଶାର ରାଜ୍ୟପାଳ । ଛିଡ଼ା ହୋଇ ଭାଷଣ ଦେବାକୁ ଆରମ୍ଭ କରିଛନ୍ତି ମାତ୍ର । ହଠାତ୍ ଜଣେ କିଏ ତାଙ୍କ ପାଖକୁ ଦଉଡ଼ି ଆସି ତାଙ୍କ କାନ ପାଖରେ କ'ଣ କହିଲେ । ଡକ୍ଟର କାଟ୍‌ଜୁ ସଙ୍ଗେ ସଙ୍ଗେ ବାହାରି ଚାଲିଗଲେ ।

ତତ୍‌କ୍ଷଣାତ୍ ଗଡ଼ରେ ସମ୍ବାଦ ପ୍ରଚାରିତ ହୋଇଗଲା—ମହାତ୍ମା ଗାନ୍ଧି ଆତତାୟୀ ଗୁଳିରେ ନିହତ ।

କେତେ ଲୋକ ଦୌଡ଼ିଲେ ସମ୍ବାଦପତ୍ର ଅଫିସକୁ । ସେତେବେଳକୁ କାନ୍ଥ ଦେହରେ ବଡ଼ ବଡ଼ ଅକ୍ଷରରେ ଲିଖିତ ଛପା କାଗଜ ମରାଯାଇଥିଲା, 'Mahatma Gandhi No.More.'

ସେଦିନ ରାତି ଓ ତହିଁ ପରଦିନ ଉପବାସ ପରେ ସନ୍ଧ୍ୟାବେଳେ ଗଙ୍ଗା-ଯମୁନା-ସଙ୍ଗମରେ ସମସ୍ତଙ୍କ ସହିତ ବୁଡ଼ ଦେଲେ । ଦଶ ଦିନ ପରେ ସେହି ସ୍ଥାନରେ ଦେଖିଲେ ଗାନ୍ଧିଙ୍କର ଅସ୍ଥି ବିସର୍ଜନର ଅଭୂତପୂର୍ବ ଦୃଶ୍ୟ । ପ୍ରାୟ ୦୦ ଲକ୍ଷ ଲୋକଙ୍କର ବିଶାଳ ଜନସମୁଦ୍ର ।

ଗାନ୍ଧି ଯୁଗର ଅବସାନ ଘଟିଲା । ସଂଗ୍ରାମୀ ରାଜନୀତି ପରିବର୍ତ୍ତେ କ୍ଷମତା ରାଜନୀତିର ଆରମ୍ଭ ହେଲା । ୧୯୪୮ ଗ୍ରୀଷ୍ମାବକାଶ ବେଳକୁ ଏମ୍.ଏ. ପରୀକ୍ଷାଫଳ ବାହାରିଲା । ସଙ୍ଗେ ସଙ୍ଗେ ମିଳିଗଲା ଅଧ୍ୟାପକ ଚାକିରି । ବାଲେଶ୍ୱର ଫକୀରମୋହନ କଲେଜରେ ଇତିହାସ ଅଧ୍ୟାପକ ରୂପେ ଯୋଗ ଦେଇ ରହିଲେ । ଫକୀରମୋହନ ସେନାପତିଙ୍କ ଧର୍ମ ପତ୍ନୀଙ୍କ ଜଗନ୍ନାଥ ଘରର ଗୋଟିଏ ଅଂଶରେ । ଦିନେ ସେ ଘର ଦେଖିବାକୁ ଆସିଥାନ୍ତି କବି ଶ୍ରୀଯୁକ୍ତ ସଚ୍ଚିଦାନନ୍ଦ ରାଉତରାୟ । ସେ କହିଲେ, "ଫକୀର ମୋହନ ସେନାପତିଙ୍କ ଘର ମଧ୍ୟରେ ରହିଛ । ଏହା ତମର ସୌଭାଗ୍ୟ । ନିଜ ଲେଖନୀର ସଦ୍‌ବ୍ୟବହାର କର ।"

ସେତେବେଳକୁ ସେ ଲେଖୁଥା'ନ୍ତି "Glimpses of Kalinga History" । ଚାକିରିର ପ୍ରଥମ ବର୍ଷରେ ଲିଖିତ ସେହି ବହିଟି କଲିକତାରୁ ପ୍ରକାଶିତ ହେଲା । ତହିଁ ପରବର୍ଷ ଲେଖିଲେ "ଯୁଗେ ଯୁଗେ ଉତ୍କଳୀୟ ଧର୍ମ ଓ ସଭ୍ୟତା ।"

ଗବେଷଣା ପାଇଁ ମନ ଅସ୍ଥିର । କିନ୍ତୁ ସେତେବେଳେ ଓଡ଼ିଶାରେ ଗବେଷଣା ନିମନ୍ତେ ଗାଇଡ୍ ଅଭାବ, ସ୍ୱାଧୀନତା ପରେ ପରେ ଅଧ୍ୟାପକ ସରକାରୀ ବୃତ୍ତି ପାଇ ବିଦେଶକୁ ଯାଉଥା'ନ୍ତି Ph. D. ଡିଗ୍ରୀ ପାଇଁ । ବିଲାତ ଯିବାକୁ ସେ ମଧ୍ୟ ଇଚ୍ଛା କଲେ । କିନ୍ତୁ ବୃତ୍ତି ପାଇବା ପାଇଁ ଚେଷ୍ଟାକରି ପାରିଲେ ନାହିଁ । ବାପାଙ୍କୁ କହିଲେ, ବିଲାତ ଯିବି, ଅନେକ ଟଙ୍କା

ଦରକାର । ପୁଣି ସବୁ ଲୋକ ସହଜ କରିବା ପାଇଁ ସେ ସେପରି ସଦାବେଳେ ଅଗ୍ରହ ସହ ଅପେକ୍ଷା କରିଥାନ୍ତି । ତାଙ୍କର ଆଶୀର୍ବାଦ ପାଇ ବଳିତ ଯିବାପାଇଁ ଚେଷ୍ଟା କରିବାକୁ ଲାଗିଲେ । ଏଣିକିବେଳେ ୧୯୫୩ରେ ତାଙ୍କର ପୁରୀ କଲେଜକୁ ବଦଳି ହେଲା । ସେତେବେଳେକୁ ଆଉ ଗୋଟିଏ ବହି ପ୍ରକାଶ ପାଇଲା "Substance of India's New Constitution" । ଏମ୍. ଏ. ପଢ଼ିଲାବେଳେ ଜଣେ ଭାରତୀୟ ସୈନ୍ୟଙ୍କର ଜୀବନ ଉପରେ ଆଧାରିତ ଗୋଟିଏ ଉପନ୍ୟାସ ଲେଖିଥିଲେ "ଅସ୍ତ୍ରବର" । କଟକର ବଣିଷ୍ଟ ପ୍ରକାଶକ କାଶୀନାଥ ମିଶ୍ର "ଗ୍ରନ୍ଥବନ୍ଧୁ ପୁସ୍ତକାଳୟ" ପକ୍ଷରୁ ସେ ବହିଟିକୁ ପ୍ରକାଶ କରିଥିଲେ ।

୧୯୫୨ ମସିହା ଡିସେମ୍ବର ମାସରେ ଲଣ୍ଡନ ବିଶ୍ୱବିଦ୍ୟାଳୟରେ Ph. D. ପାଇଁ ଭର୍ତ୍ତି ହେଲେ । ତାଙ୍କର ଗାଇଡ଼ ହେଲେ, ପ୍ରଫେସର ସିରିଲ୍ ହେନେରୀ ଫିଲିପସ୍ । ସେତେବେଳେ ସେ ଥିଲେ ପ୍ରାଚ୍ୟ ବିଦ୍ୟା ଅନୁଷ୍ଠାନର ନିର୍ଦ୍ଦେଶକ । ପରେ ସେ ହୋଇଥିଲେ ଲଣ୍ଡନ ବିଶ୍ୱବିଦ୍ୟାଳୟର କୁଳପତି ଏବଂ ତାପରେ Royal Commissionର ଚେୟାରମ୍ୟାନ । ଲଣ୍ଡନରେ ଦୁଇବର୍ଷ ଅଧ୍ୟୟନ କାଳରେ କ୍ଲେମେଣ୍ଟ ଆଟଲି, ଉଇନ୍‌ଷ୍ଟନ୍ ଚର୍ଚ୍ଚିଲ, ପେଥିକ୍ ଲରେନ୍ସ ପ୍ରଭୃତି ନେତାମାନଙ୍କୁ ଦେଖିଥିଲେ ଓ ବ୍ରିଟିଶ ପାର୍ଲିଆମେଣ୍ଟରେ ମଝିରେ ମଝିରେ ଦର୍ଶକ ଗ୍ୟାଲେରୀରେ ଯାଇ ବସୁଥିଲେ । ସେଥିସଙ୍ଗେ ତରୁଣ ସାମ୍ୟବାଦୀ ସଙ୍ଗଠନ ସହିତ ସମ୍ପର୍କ ରଖି ସେମାନଙ୍କର ରାଜନୀତି ଚର୍ଚ୍ଚାରେ ଭାଗ ନେଉଥିଲେ । ୧୯୫୬ ଶେଷରେ ଡିଗ୍ରୀ ପାଇ ସ୍ୱଦେଶ ଫେରିଲାବେଳକୁ ଯୁଦ୍ଧ ହେତୁ ସୁଏଜ୍ କେନାଲ ବନ୍ଦ ହୋଇ ଯାଇଥାଏ । ଶେଷରେ ଇଂଲଣ୍ଡରୁ ଇଉରୋପ ମହାଦେଶ ଏବଂ ସେଠାରୁ ମଧ୍ୟପ୍ରାଚ୍ୟର ବିଭିନ୍ନ ଦେଶ ମଧ୍ୟରେ ସ୍ଥଳ ଓ ଜଳ ପଥରେ ଦେଶକୁ ଫେରିଲେ ରୋମାଞ୍ଚକର ଅନୁଭୂତି ନେଇ ।

୧୯୫୭ ରେ ରେଭେନ୍‌ସା କଲେଜରେ ଯୋଗ ଦେଇ ପରେ ପରେ ଇତିହାସ ବିଭାଗର ରିଡ଼ର୍ ଓ ମୁଖ୍ୟ ଅଧ୍ୟାପକ ହେଲେ । ୧୯୫୮ ରେ ଉତ୍କଳ ବିଶ୍ୱବିଦ୍ୟାଳୟର ସ୍ନାତକୋତ୍ତର ଇତିହାସ ବିଭାଗଟିକୁ ନିଜ ଅଧୀନକୁ ନେଇଯିବାରୁ ସେ ସେଠାରେ ମଧ୍ୟ ରିଡ଼ର ଓ ମୁଖ୍ୟ ଅଧ୍ୟାପକ

ଭିତରେ ନିଯୁକ୍ତ ହେଲେ । ବର୍ଷ ଶେଷବେଳକୁ ଲଣ୍ଡନ ବିଶ୍ୱବିଦ୍ୟାଳୟରୁ ରକ୍‌ଫେଲର ଫେଲୋସିପ୍‌ ପାଇ ସେଠାରେ ବର୍ଷକ ପାଇଁ ଉଚ୍ଚତର ଗବେଷଣା କାର୍ଯ୍ୟରେ ଯୋଗଦେବାକୁ ଚାଲିଗଲେ, ସଙ୍ଗରେ ଗଲେ ସ୍ତ୍ରୀ ରାଜଶ୍ରୀ, ଦଶବର୍ଷର କନ୍ୟା ହୃଦମିତା, ଆଠବର୍ଷର ପୁତ୍ର ସିଦ୍ଧାର୍ଥ । ୧୯୭୦ ମସିହାଟି ବଡ଼ ଭଲରେ କଟିଲା । ଯିବାବେଳେ ମିଶର ଦେଶର ପିରାମିଡ୍‌, ଇଟାଲିର ପ୍ରାଚୀନ ପମ୍ପେ ନଗରୀର ଧ୍ୱଂସାବଶେଷ ଓ ଭିସୁଭିୟସ ଆଗ୍ନେୟଗିରି ଇତ୍ୟାଦି ଦେଖି ସୁଇଜରଲ୍ୟାଣ୍ଡ ଓ ଫ୍ରାନ୍‌ସ ଦେଶ ମଧ୍ୟ ଦେଇ ଇଂଲିଶ୍‌ ଚ୍ୟାନେଲ ଅତିକ୍ରମ କଲେ ।

୧୯୭୨ରେ ଇଂଲଣ୍ଡର ପ୍ରାଚୀନତମ ବିଜ୍ଞାନ ସଙ୍ଗଠନ Royal Society ତାଙ୍କର ଜନଗଣ ବୃଦ୍ଧି ଉପରେ ମହାଅଭିଯାନର ସହକାରିତା ପ୍ରାଳନ କରୁଥିବାରୁ ତହିଁରେ ଯୋଗ ଦେବାପାଇଁ ବିଶ୍ୱର ସମସ୍ତ ବିଶ୍ୱବିଦ୍ୟାଳୟକୁ ପ୍ରତିନିଧି ପଠାଇବା ପାଇଁ ଅନୁରୋଧ କରିଥିଲେ । ଉତ୍କଳ ବିଶ୍ୱବିଦ୍ୟାଳୟର ତଦାନୀନ୍ତନ କୁଳପତି ଡକ୍ଟର ପ୍ରାଣକୃଷ୍ଣ ପରିଜା ତାଙ୍କୁ ଲେଖିଲେ ଉତ୍କଳ ବିଶ୍ୱବିଦ୍ୟାଳୟ ପକ୍ଷରୁ ସେଥିରେ ଯୋଗ ଦେବା ପାଇଁ ।

ସପ୍ତାହବ୍ୟାପୀ ସେହି ସମାବେଶ ମଧ୍ୟରେ ସେ [illegible] ଇଂଲଣ୍ଡର ତଦାନୀନ୍ତନ ପ୍ରଧାନମନ୍ତ୍ରୀ ହ୍ୟାରଲ୍ଡ ମ୍ୟାକମିଲାନ୍‌, ରାବ୍‌ ବଟଲର୍‌, ହାରୋଲ୍ଡ ଉଇଲସନ, ଜେଓ୍ୱାଲ ଲରେନ୍‌ସ, ଆଇଭର ଜେନିଂସ, ପ୍ରିନସ ଫିଲିପ ପ୍ରଭୃତି ଅନେକ ବ୍ୟକ୍ତିଙ୍କୁ ଅତି ନିକଟରେ ଦେଖି କଥାବାର୍ତ୍ତା କରିବାର ସୁଯୋଗ ମଧ୍ୟ ପାଇଲେ । ସେଥି ସଙ୍ଗେ କେତେକ ବଶିଷ୍ଟ ସ୍ଥାନ ପରିଦର୍ଶନ ପାଇଁ ସୁଯୋଗ ମିଳିଲା । ତା ମଧ୍ୟରେ ଥିଲା ହାରୱେଲ୍‌ଠାରେ ଅବସ୍ଥିତ ଆଣବିକ କେନ୍ଦ୍ର । ବିଜ୍ଞାନର ଅଗ୍ରଗତିର ଚରମ ସୀମାକୁ ସେଠାରେ ସେ ହୃଦୟଙ୍ଗମ କଲେ । ସେହି ବର୍ଷ ତାଙ୍କ ଲିଖିତ "Political Philosophy of Jawaharlal Nehru" ଇଂଲଣ୍ଡରେ ପ୍ରକାଶିତ ହେଲା । ପରେ ପରେ ଆମେରିକାରେ ମଧ୍ୟ ସେ ପୁସ୍ତକ ପ୍ରକାଶିତ ହେଲା । ଲଣ୍ଡନରେ ଥିବା ଭାରତୀୟ ହାଇକମିଶନର ଶ୍ରୀମତୀ ବିଜୟଲକ୍ଷ୍ମୀ ପଣ୍ଡିତଙ୍କୁ ଯେତେବେଳେ ସେ ପୁସ୍ତକ ଦେଖାଇଲେ ସେ ଆନନ୍ଦରେ ତାଙ୍କୁ 'ଭାଇ' ବୋଲି ସମ୍ବୋଧନ କରି କହିଥିଲେ "ମୁଁ ଜାଣି ନଥିଲି ମୋ

ଭାଇର ପୁଣି ଗୋଟିଏ ରାଜନୈତିକ ଦର୍ଶନ ରହିଛି । ତୁମେ ଏକ ନୂତନ ବିଷୟ ସୃଷ୍ଟି କରିଦେଲ ।"

ତାଙ୍କ ଲଣ୍ଡନ ରହଣି କାଳରେ ପଣ୍ଡିତ ନେହେରୁ କମନଓ୍ୱେଲଥ ପ୍ରଧାନମନ୍ତ୍ରୀ ସମ୍ମିଳନୀରେ ଯୋଗ ଦେବାପାଇଁ ଆସିଲେ । ସ୍ତ୍ରୀ, କନ୍ୟା ଓ ପୁଅ ସହ ଉତ୍କଳ ହାଉସ ତାଙ୍କୁ ଭେଟିବାକୁ ଗଲେ । ପୋଲିସ ଭିତରକୁ ଛାଡ଼ିଲେ ନାହିଁ । ପୁଅ ସିଦ୍ଧାର୍ଥ ଏକ ପାଉଣ୍ଡ ମୂଲ୍ୟରେ ଗୋଟିଏ ସୁନ୍ଦର ଗୋଲାପ ଫୁଲ ହାତରେ ଧରି ଛିଡ଼ା ହୋଇଥାଏ ।

ନେହେରୁଙ୍କ ଗାଡ଼ି ଆସିଗଲା । ହଠାତ୍ ଜଣେ ପୋଲିସ ଅଫିସର ଭିଡ଼ ଭିତରକୁ ପଶି ଆସି ସିଦ୍ଧାର୍ଥକୁ ଶୂନ୍ୟରେ ଟେକି ନେଇ ନେହେରୁଙ୍କ ଆଗରେ ଛିଡ଼ା କରାଇଦେଲେ । ସେ ପ୍ରଧାନମନ୍ତ୍ରୀଙ୍କୁ ଫୁଲଟି ଉପହାର ଦେଲା ଏବଂ ନେହେରୁ ତା ଦେହରେ ହାତ ରଖି ତାକୁ ସ୍ନେହ କଲେ ।

ନେହେରୁଙ୍କ ଉପରେ ପୁସ୍ତକ ଲେଖିଥିବା ଯୋଗୁ କେତେ କେତେ ବିଶିଷ୍ଟ ରାଜନୀତିଜ୍ଞ ଉପଦେଶ ଦେଲେ "ନେହେରୁଙ୍କ ପାଖରୁ ଏହାର ସୁଯୋଗ ନିଅ । ସେ ଆନନ୍ଦରେ ତୁମକୁ ଯେକୌଣସି ବଡ଼ ପଦ ପାଇଁ ସୁବିଧା ଦେବେ ।" ଏପରି ଉପଦେଶ ପ୍ରତି ତାଙ୍କର ବିତୃଷ୍ଣା ଦେଖି ସେମାନେ ତାଙ୍କୁ ଅପଦାର୍ଥ ବୋଲି ଭର୍ତ୍ସନା କରିବାକୁ ମଧ୍ୟ ଭୁଲି ନଥିଲେ । ସେ କହୁଥିଲେ "ନିଜର ରାଜନୈତିକ ଉଦ୍ଦେଶ୍ୟ ରଖି ମୁଁ ସେ ବହି ଲେଖିନାହିଁ । ସୁତରାଂ ସେଥିରୁ ସ୍ୱାର୍ଥ ହାସଲ କରିବା ଅର୍ଥ ନିଜର ଲେଖନୀ ପ୍ରତି ଅବମାନନା କରିବା ।"

୧୯୬୧ ରେ ଫେରିଆସିଲେ ଭାରତକୁ । ପରେ ପରେ ଉତ୍କଳ ବିଶ୍ୱବିଦ୍ୟାଳୟର ପ୍ରଫେସର ପଦରେ ନିଯୁକ୍ତି ପାଇଲେ । ସେହି ବର୍ଷ ତାଙ୍କର ସାନଭାଇ ମନୋଜ ନିଜର 'ଭିଜନ୍' ପ୍ରେସ ଏବଂ ଖ୍ରୀଷ୍ଟ କଲେଜର ଅଧ୍ୟାପକ ପଦ ତ୍ୟାଗ କରି ପଣ୍ଡିଚେରୀ ଶ୍ରୀଅରବିନ୍ଦ ଆଶ୍ରମକୁ ବିଦାୟ ନେଇ ଗଲେ । ଜଣେ ଉଦୀୟମାନ ବାମପନ୍ଥୀ ରାଜନୀତିଜ୍ଞ ଏବଂ ପ୍ରଗତିବାଦୀ ଲେଖକ ରୂପେ ସୁନାମ ଅର୍ଜନ କରୁଥିଲାବେଳେ ଏପରି ଏକ ଆକସ୍ମିକ

ପରିବର୍ତ୍ତନରେ ବର୍ଣ୍ଣିତ ହେବାକଥା । ଅବଶ୍ୟ, ସେହି ପବିତ୍ର ପରିବେଶ ମଧ୍ୟରେ ନିଜର ଲେଖନୀଦ୍ୱାରା ଅନ୍ତର୍ଜାତିକ କ୍ଷେତ୍ରରେ ଆଜି ନିଜକୁ ଖ୍ୟାତନାମା ଲେଖକ ଭାବେ ପ୍ରତିଷ୍ଠିତ କରାଇ ପାରିଛନ୍ତି ମନୋଜ । ତେଣୁ ଓଡ଼ିଶାରେ ସାରସ୍ୱତ ସାଧକ ଭାବରେ ଏହି ଦାସ ଭ୍ରାତୃଯୁଗଳ ଅଭିନନ୍ଦନୀୟ ।

୧୯୬୨ ରେ ଭାରତ ସରକାର ଦୁଇମାସ ପାଇଁ ପଠାଇଲେ ସୋଭିଏତ୍ ରୁଷର ତାସକେଣ୍ଟ, ଲେନିନଗ୍ରାଡ ଏବଂ ମସ୍କୋ ବିଶ୍ୱବିଦ୍ୟାଳୟରେ ଆଧୁନିକ ଭାରତ ଉପରେ କେତେଗୋଟି ବକ୍ତୃତା ଦେବାପାଇଁ । ସେ ସମୟରେ ଅନେକ ଦ୍ରଷ୍ଟବ୍ୟ ସ୍ଥାନ ଦେଖିବାର ସୁଯୋଗ ସେ ପାଇଲେ ଗହନ ଅରଣ୍ୟର ଯେଉଁ କ୍ଷୁଦ୍ର କୁଡ଼ିଆ ମଧ୍ୟରୁ ଲେନିନ ଶେଷ ବିପ୍ଳବ ପରିଚାଳନା କରିଥିଲେ, ସୋଭିଏତ୍ ଦେଶର ସର୍ବୋଚ୍ଚ କର୍ତ୍ତା ହେଲାପରେ ସେ ଯେଉଁ ପ୍ରକାର କୋଠରୀରେ ଦିନାତିପାତ କରୁଥିଲେ ଏବଂ ତାଙ୍କ ସମ୍ବନ୍ଧୀୟ କେତେକ ସ୍ଥାନ ଦେଖି ସେହି ମହାନ୍ ବିପ୍ଳବୀଙ୍କ ବ୍ୟକ୍ତିତ୍ୱର ପରିଚୟ ସେ ପାଇଲେ । ଗାନ୍ଧିଙ୍କ ପରି ସେ ମଧ୍ୟ ଥିଲେ ବ୍ୟକ୍ତିଗତ ଜୀବନରେ ଅସାଧାରଣ ଭାବେ ସରଳ ଓ ନିରାଡ଼ମ୍ବର ।

ମହାନ୍ ଅକ୍ଟୋବର ବିପ୍ଳବର ଦିନ ପାଖେଇ ଆସିଲା । ସେହି ପ୍ରଭାତରେ ମସ୍କୋ ବେତାର କେନ୍ଦ୍ରର ଲୋକେ ଆସିଲେ, ତାଙ୍କର ଏକ ସଂକ୍ଷିପ୍ତ ଭାଷଣ ରେକର୍ଡିଂ କରିନେବା ପାଇଁ । ସନ୍ଧ୍ୟାରେ ତାହା ପ୍ରସାରିତ ହେବ । ଭାଷଣ ମଧ୍ୟରେ ସେ କହିଲେ, "ସମୟ ଆସିଛି ଯେତେବେଳେ ଭାରତରେ ମଧ୍ୟ ଲେନିନ୍‌ଙ୍କ ପରି ଜଣେ ମହାନ୍ ବିପ୍ଳବୀଙ୍କର ଜନ୍ମଲାଭ କରିବା ଆବଶ୍ୟକ ଯାହା ଦ୍ୱାରା କୋଟି କୋଟି ଦରିଦ୍ର ମନୁଷ୍ୟ ଏକ ନୂତନ ଯୁଗରେ ପଦାର୍ପଣ କରିପାରିବେ ଏବଂ ମହାତ୍ମାଗାନ୍ଧିଙ୍କଦ୍ୱାରା ପ୍ରତିଷ୍ଠିତ ରାଜନୈତିକ ସ୍ୱାଧୀନତା ମନୁଷ୍ୟର ପ୍ରକୃତ ଅର୍ଥନୈତିକ ମୁକ୍ତିରେ ପରିଣତ ହୋଇପାରିବ ।"

ରେକର୍ଡିଂ କରୁଥିବା ବ୍ୟକ୍ତିମାନଙ୍କ ମଧ୍ୟରୁ ଜଣେ ଆଶ୍ଚର୍ଯ୍ୟ ହୋଇ ପଚାରିଲେ, "ଆପଣଙ୍କର ଏପରି ଉକ୍ତି ରେଡ଼ିଓରେ ପ୍ରସାରିତ ହେଲେ ଭାରତ ସରକାର କଷ୍ଟ ଭାବିବେ ନାହିଁ ?" ତାଙ୍କ କଥାର

ଅର୍ଥ ବୁଝି ସାରିବା ସଙ୍ଗେ ସେ କହିଲେ "ନା, ମୋର ଏ ଭାଷଣ ଶକ୍ତି ପାର୍ଲିଆମେଣ୍ଟ ଭବନ ଆଗରେ ମାଇକ୍ ଦ୍ୱାରା ପ୍ରଚାର କଲେ ମଧ୍ୟ କେହି କଣ୍ଠ ଶୁଣିବେ ନାହିଁ।"

ବିପ୍ଳବ ଅବସରରେ ସେମାନଙ୍କର ପେରେଡ୍ ସଙ୍ଗେ ସଙ୍ଗେ କ୍ରୁଶ୍ଚେଭ, ବୁଲ୍‌ଗାନିନ୍, ବ୍ରେଜନେଭ୍ ଇତ୍ୟାଦି ସୋଭିଏତ ନେତାମାନଙ୍କୁ ମଧ୍ୟ ନିକଟବର୍ତ୍ତୀ ସ୍ଥାନରୁ ଦେଖି ପାରିଲେ।

ତାଙ୍କରି ସୋଭିଏତ ରୁଷରେ ରହଣି ବେଳେ ଭାରତ-ଚୀନ ଯୁଦ୍ଧ ଆରମ୍ଭ ହୋଇଥାଏ। ଫେରିଆସି କୁଳପତିଙ୍କୁ ଲେଖିଲେ, ମୁଁ ଯୁଦ୍ଧ କ୍ଷେତ୍ରକୁ ଯିବାକୁ ଇଚ୍ଛା କରୁଛି। ମୋତେ ସୁଯୋଗ ଦିଆଯାଉ। କୁଳପତି ଚିଠିର ନକଲ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ବିଜୁ ପଟ୍ଟନାୟକଙ୍କ ପାଖକୁ ତାଙ୍କର ଦରଖାସ୍ତ ସୁପାରିଶ କରି ପଠାଇଦେଲେ। ମୁଖ୍ୟମନ୍ତ୍ରୀ ତାଙ୍କରି ସୁପାରିଶ ସହିତ କଟକରେ ଅବସ୍ଥିତ ଆର୍ମି ଅଫିସକୁ ପଠାଇଦେଲେ। ତାଙ୍କୁ ମିଳିଲା ସାକ୍ଷାତ କରିବାକୁ। ଆର୍ମି ଅଫିସର କହିଲେ ଆପଣ Front Line ରେ ସିନା ଲଢ଼ି ପାରିବେ ନାହିଁ, କିନ୍ତୁ ସେଠାରୁ ଦୈନିକ ବିବରଣୀ ପଠାଇବାରେ ଆପଣଙ୍କୁ ନିଯୁକ୍ତ କରାଯିବ, ପ୍ରସ୍ତୁତ ରହନ୍ତୁ। ଯୁଦ୍ଧ ବନ୍ଦ ହେଲା, ଅବଶ୍ୟ ଯୁଦ୍ଧକୁ ଯିବାକୁ ସମ୍ମତି ଦେଇଥିବା ଯୋଗୁ ଆତ୍ମସନ୍ତୋଷ ମିଳିଲା।

୧୯୬୭ରେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ଡ଼ି.ଲିଟ୍ ଡିଗ୍ରୀ ଲାଭ କଲେ। ତାହାର ପରବର୍ତ୍ତୀ ବର୍ଷ ତାଙ୍କ ଜୀବନକୁ ଆଣିଦେଲା ଦାରୁଣ ଆଘାତ। ଅଗଷ୍ଟ ୧୬ ତାରିଖ ସନ୍ଧ୍ୟାରେ ଟେଲିଗ୍ରାମ ପାଇଲେ, ପିତୃଦେବଙ୍କ ମୃତ୍ୟୁସମ୍ବାଦ।

ସେହି ଦିନ ଜନ୍ମଭୂମିରେ ତାଙ୍କ ସହିତ ହୋଇଥିଲା ଶେଷ ସାକ୍ଷାତ। ସପରିବାର ଗ୍ରାମରେ ଗ୍ରୀଷ୍ମ ଛୁଟି କଟାଇ ଭୁବନେଶ୍ୱର ଫେରିବା କଥା। ଫେରିବା ପୂର୍ବ ରାତିରେ ପିତା ଆୟୋଜନ କରିଥିଲେ ଗୋଟିଏ ଥିଏଟର। ବହୁ ଜନ ସମାଗମ ହୋଇଥାଏ। ପିତାଙ୍କ ପାଖରେ ବସି ଗ୍ରାମର ଯୁବକମାନଙ୍କ ଅଭିନୟ ଉପଭୋଗ କରୁଥିବାବେଳେ ସେ କହିଥିଲେ, 'ପଣ୍ଡିତ ଲୋ, ସେବେଳେ ତ' ତୁ 'ଅସ୍ତରାଗ' ଉପନ୍ୟାସ ଲେଖିଥିଲୁ, ତା'ପରେ ଆଉ

କାହିଁକି ଲେଖିଲୁ ନାହିଁ ?" ଉତ୍ତର ଦାସ କହିଲେ, "ଆଜି ଏ ବୟସରେ ଉପନ୍ୟାସ ଲେଖିଲେ ଲୋକେ ହସିବେ।" ପିତା ବିରକ୍ତି ପ୍ରକାଶ କହିଲେ, "ଉପନ୍ୟାସ ଲେଖିବାଟି କ'ଣ ଖରାପ କାମ ? ସେଇ ନାଟକ ଦେଖୁଛୁ ସେ ନାଟକର ଲେଖକ କ'ଣ ଖରାପ କାମ କରିଛନ୍ତି ? କେତେ ଲୋକ ତାଙ୍କ ଲେଖାରୁ ଆନନ୍ଦ ପାଉଛନ୍ତି ଜାଣିଛୁ।"

ସେଇ ସ୍ନେହମୟ ପିତାଙ୍କୁ ହରାଇବା ବ୍ୟଥା ତାଙ୍କୁ ଦେଲା ପ୍ରଚଣ୍ଡ ଧକ୍କା । ହେଲେ ସେ, ତାହାଙ୍କ କଥା ମନରେ ରଖି ଇଂରାଜୀରେ ଉପନ୍ୟାସଟିଏ ଲେଖିଲେ—"Keep the Story Secret" ଓ ଓଡ଼ିଆରେ ନାଟକଟିଏ ଲେଖିଲେ "ଅସ୍ପଷ୍ଟ ଆହ୍ୱାନ" ।

୧୯୬୦—ଅଷ୍ଟ୍ରେଲିଆର କାନ୍‌ବେରା ସହରରେ ପ୍ରାଚ୍ୟ ବିଦ୍ୟାବିତ୍ ସମ୍ମିଳନୀରେ ଯୋଗ ଦେଲେ । ଯିବାଆସିବା ପଥରେ ଦକ୍ଷିଣପୂର୍ବ ଏସିଆର ବିଭିନ୍ନ ସ୍ଥାନ ଦେଖିଲେ । ସେଠାରୁ ଫେରି ବର୍ଷକ ପାଇଁ ସିମଳା ବସ୍ତୁତଃ ନିବାସରେ ସ୍ଥାପିତ Indian Institute of Advanced Studiesକୁ ଗବେଷଣା ନିମନ୍ତେ ଗଲେ ।

ଭାରତ ପାକିସ୍ତାନ ଯୁଦ୍ଧ ପରେ ସ୍ୱାଧୀନ ବାଂଲାଦେଶର ଅଭ୍ୟୁଦୟ ଇତିହାସ ଲେଖିବା ଆଶା ମନରେ ପୋଷଣ କରି ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧୀଙ୍କୁ ଜଣାଇବାରୁ ନିର୍ଦ୍ଦେଶ ମିଳିଲା, କୌଣସି ଐତିହାସିକ ଘଟଣାର ଇତିହାସ ସଙ୍ଗେ ସଙ୍ଗେ ଲେଖିବା ଅପେକ୍ଷା କିଛି ସମୟ ପରେ ଲେଖିବା ବିଧେୟ । ତେଣୁ ସେ ଆଶା ଛାଡ଼ି କେତେକ ତଥ୍ୟ ସଂଗ୍ରହ କରି ରଖିଲେ ମାତ୍ର ।

୧୯୬୮ରେ ନିମନ୍ତ୍ରିତ ହୋଇ ବାଂଲାଦେଶ ଇତିହାସ କଂଗ୍ରେସରେ ଯୋଗ ଦେଲେ ।

୧୯୬୭ରେ ବ୍ରିଟିଶ କାଉନ୍‌ସିଲ ନିମନ୍ତ୍ରଣରେ ଗଲେ ଲଣ୍ଡନ । ଭାରତର ସ୍ୱାଧୀନତା ସଂଗ୍ରାମ ଉପରେ ତଥ୍ୟ ସଂଗ୍ରହ କରିବାକୁ ସେ ନିମନ୍ତ୍ରଣ ମିଳିଥିଲା । ସେହି ଅବକାଶରେ ଭାରତର ଶେଷ ଇଂରେଜ ବଡ଼ଲାଟ୍ ଲର୍ଡ ଲୁଇ ମାଉଣ୍ଟବ୍ୟାଟେନଙ୍କ ସହିତ ତାଙ୍କର ସାକ୍ଷାତକାର ପାଇଁ କାଉନ୍‌ସିଲ ପକ୍ଷରୁ ବ୍ୟବସ୍ଥା କରାଗଲା । ମାଉଣ୍ଟବ୍ୟାଟେନଙ୍କ

ଆତିଥ୍ୟ ଗ୍ରହଣ କରି ତାଙ୍କ ପାଖରୁ ଅନେକ କଥା ଜାଣିବା ପାଇଁ ଚେଷ୍ଟା-କଲେ । ସ୍ୱାଧୀନତା ଓ ଦେଶ ବିଭାଜନ ପରେ ୩୦ ବର୍ଷ ବିତି ଯାଇଥାଏ । ସେ ସମ୍ବନ୍ଧୀୟ ଅନେକ ଗୋପନୀୟ କାଗଜପତ୍ର ତାଙ୍କ ପାଖରେ ମହଜୁଦ ଥାଏ । ସେ ସବୁ ଦେଖାଇବା ପାଇଁ ତାଙ୍କୁ ବହୁତ ଅନୁରୋଧ କଲେ ହିଁ କୌଣସି ପ୍ରକାରେ ସେ ରାଜି ହେଲେ ନାହିଁ । ଶେଷରେ ସେ ତାଙ୍କୁ କହିଲେ, "ଭାରତ ବିଭାଜନ ପାଇଁ କିଏ କେତେଦୂର ଦାୟୀ ଏବଂ ଆପଣ ନିଜେ କେତେଦୂର ଦାୟୀ ତାହା ଆପଣ ଜାଣନ୍ତି । ଯେଉଁ ପର୍ଯ୍ୟନ୍ତ ସେ ବିଷୟରେ ସଠିକ ଇତିହାସ ଲେଖା ନ ଯିବ, ସେ ପର୍ଯ୍ୟନ୍ତ ଆପଣ ସନ୍ଦେହମୁକ୍ତ ହୋଇ ପାରିବେ ନାହିଁ । ତେଣୁ ଆପଣ ନିଜେ ସେକଥା ଲେଖିଗଲେ ଭବିଷ୍ୟତ ଆପଣଙ୍କ ପ୍ରତି ଋଣୀ ରହିବ ଏବଂ କୁହେଳିକା ମଧ୍ୟରୁ ସତ୍ୟ ପରିସ୍ଫୁଟ ହୋଇ ଉଠିବ ।"

ଡକ୍ଟର ଦାସଙ୍କ କଥାର ସାରବତ୍ତା ହୃଦୟଙ୍ଗମ କଲେ ଲର୍ଡ ମାଉଣ୍ଟବ୍ୟାଟେନ୍ । ତା'ପରେ ଉତ୍ତର ଦେଲେ : "ମୁଁ ଯାହା ଲେଖିବି ବିଷୟଟିକୁ ତାହା ଅଧିକତର ବିବାଦମାନ କରିଦେବ । ସତ୍ୟ ଲେଖିଲେ ଯଦି ପାକିସ୍ତାନ ବିପକ୍ଷରେ ଯିବ, ସେମାନେ କହିବେ ମୁଁ ମିଥ୍ୟା-ବାଦୀ । ଭାରତ ବିପକ୍ଷରେ ଯଦି କିଛି ଲେଖିବି, ଭାରତୀୟମାନେ କହିବେ ମୁଁ ମିଥ୍ୟାବାଦୀ । ମିଥ୍ୟାବାଦୀ ରୂପେ ପରିଚିତ ହେବାକୁ ମୋର ଇଚ୍ଛା ନାହିଁ । ମୋର କାଗଜପତ୍ର ସବୁ ରହିଲା । ମୋ ମୃତ୍ୟୁ ପରେ ସେଥିରୁ ଐତିହାସିକମାନେ ଯାହା ଲେଖିଲେ ମଧ୍ୟ ମୋର ସେଥିରେ ଦୁଃଖ କରିବା ପାଇଁ ଅବକାଶ ନଥିବ ।"

ସେତେବେଳେ ପଶ୍ଚିମ ଜର୍ମାନୀର ହାଇଡେଲବାର୍ଗ ବିଶ୍ୱ-ବିଦ୍ୟାଳୟର ନିମନ୍ତ୍ରଣକ୍ରମେ ସେଠାକାର ଦକ୍ଷିଣ-ଏସିଆ ବିଭାଗ ଦେଖିବାର ସୁଯୋଗ ମିଳିଲା ।

୧୯୬୭ରେ ଲେଖିଲେ "National Congress Versus the British" ନାମକ ଏକ ପୁସ୍ତକ । ସେହିବର୍ଷ ଭାରତୀୟ ଇତିହାସ କଂଗ୍ରେସର ବାର୍ଷିକ ଅଧିବେଶନ ଉତ୍କଳ ବିଶ୍ୱବିଦ୍ୟାଳୟ ପରିସର ମଧ୍ୟରେ ବାଣୀ-ବିହାରଠାରେ ଅନୁଷ୍ଠିତ ହେଲା । ଆୟୋଜନର ଦାୟିତ୍ୱ ବହନ ସଙ୍ଗେ

ସେହି ଉଦ୍ଦେଶ୍ୟରେ ଓଡ଼ିଶାର ଇତିହାସ ଓ ସଂସ୍କୃତି ଉପରେ ଏକ ପୁସ୍ତକ ସଙ୍କଳନ କରିବାରେ ଲାଗିଲେ । ପ୍ରତିଷ୍ଠିତ ଐତିହାସିକ ଓ ଗବେଷକ-ମାନଙ୍କର ଲେଖା ନେଇ "Sidelights on History and Culture of Orissa" ନାମକ ଗ୍ରନ୍ଥ ଇତିହାସ କଂଗ୍ରେସ ଦ୍ୱାରା ଉନ୍ମୋଚିତ କରାଇଲେ । ସୁନ୍ଦର ବିଷୟ, ଓଡ଼ିଶାର ଇତିହାସ ଓ ସଂସ୍କୃତିର ବିଭିନ୍ନ ବିଷୟ ଉପରେ ଲିଖିତ ପ୍ରବନ୍ଧମାନ ଏହି ପୁସ୍ତକଟିକୁ ଓଡ଼ିଶାର ଏକ ସଂକ୍ଷିପ୍ତ ପରିଚୟପତ୍ର ରୂପେ ଅନେକେ ବିବେଚନା କଲେ । 'ସମାଜ' ସମ୍ପାଦକ ଡକ୍ଟର ରାଧାନାଥ ରଥ ବିଦେଶରୁ ଆସୁଥିବା ଅଧିକାଂଶ ବିଶିଷ୍ଟ ବ୍ୟକ୍ତିଙ୍କୁ ଏହି ପୁସ୍ତକଟିକୁ ଉପହାର ରୂପେ ଆଜି ପର୍ଯ୍ୟନ୍ତ ଦେଇ ଆସୁଛନ୍ତି ।

ଏହି ପୁସ୍ତକ ପରେ ପରେ ଜର୍ମାନୀର ବିଶିଷ୍ଟ ଐତିହାସିକ ହାରମାନ୍ କୁଲକେ ଏବଂ ଅନ୍ୟମାନଙ୍କ ସହଯୋଗରେ "Orissa Bibliography" ନାମକ ପୁସ୍ତକ ସଙ୍କଳନ କରାଗଲା । ଉକ୍ତ ପୁସ୍ତକର ପ୍ରକାଶକ ହେଲେ କଟକର ପ୍ରସିଦ୍ଧ ପୁସ୍ତକ ପ୍ରତିଷ୍ଠାନ 'ବିଦ୍ୟାପୁରୀ' ।

୧୯୭୪ ମସିହାରେ UNESCO ପକ୍ଷରୁ ଆୟୋଜିତ ଇଂଲଣ୍ଡର ନରଉଇଚ ଠାରେ ଅନୁଷ୍ଠିତ ହେଉଥିବା ଏକ ଆନ୍ତର୍ଜାତିକ ସମ୍ମିଳନୀରେ ଯୋଗ ଦେବାପାଇଁ ନିମନ୍ତ୍ରଣ ପାଇଲେ । ସେଠାରୁ ଫେରିଲା ପରେ ସେହି-ବର୍ଷ ଆମେରିକା ଯୁକ୍ତରାଷ୍ଟ୍ରରୁ ନିମନ୍ତ୍ରଣ ପାଇ ସେଠାରେ Visiting Professer ରୂପେ ଛଅମାସ ପାଇଁ ନିଯୁକ୍ତ ହେଲେ । ଯୁକ୍ତରାଷ୍ଟ୍ରର ଅନେକ ସ୍ଥାନ ଓ କାନାଡ଼ା ଭ୍ରମଣର ସହିତ ଅନେକ ବିଶିଷ୍ଟ ବ୍ୟକ୍ତିଙ୍କୁ ସାକ୍ଷାତ କରିବାର ମଧ୍ୟ ସୁଯୋଗ ମିଳିଲା ।

୧୯୭୯ ମସିହାରେ ସନ୍ତ୍ରାସବାଦୀମାନଙ୍କ ଆକ୍ରମଣରେ ଲର୍ଡ ମାଉଣ୍ଟବ୍ୟାଟେନ୍ ପ୍ରାଣ ହରାଇଲେ । ତାଙ୍କ ସହିତ ସାକ୍ଷାତକାର ବେଳେ ସେ କହିଥିଲେ ଯେ କେବଳ ତାଙ୍କ ମୃତ୍ୟୁ ପରେ ହିଁ ତାଙ୍କର କାଗଜପତ୍ର ଅନ୍ୟମାନେ ଦେଖିପାରିବେ । ସେସବୁ ଦେଖିବା ପାଇଁ ପ୍ରବଳ ଇଚ୍ଛା ହେବାରୁ ବିଶ୍ୱବିଦ୍ୟାଳୟ ମଞ୍ଜୁରୀ କମିଶନଙ୍କୁ ଜଣାଇଲେ କେତେକ ସପ୍ତାହ ପାଇଁ ବିଲାତ ପଠାଇବାକୁ । କମିଶନ ରାଜିହେଲେ । ୧୯୮୧ ଜୁନ ମାସରେ ଲଣ୍ଡନରେ ପହଞ୍ଚି ଶୁଣିଲେ, ବ୍ରିଟିଶ ସରକାରଙ୍କ ନିଯୁକ୍ତ ଇଂରେଜ ଐତିହାସିକମାନେ ମାଉଣ୍ଟବ୍ୟାଟେନ୍ଙ୍କ ଜୀବନୀ ଲେଖିବେ ।

ତା’ପୂର୍ବରୁ ତାଙ୍କର କାଗଜପତ୍ର ଅନ୍ୟ କେହି ଦେଖି ପାରିବେ ନାହିଁ । ଅନ୍ତ ଦୁଃଖରେ ତାଙ୍କର ଅଧ୍ୟାପକ ସାର୍ ସିରିଲ ହେନରୀ ଫିଲିପ୍‌ଙ୍କ ସହିତ ସାକ୍ଷାତ କଲେ । ସେ ସେତେବେଳକୁ Royal Commissionର ଚେୟାରମ୍ୟାନ । ସେ ମାଉଣ୍ଟବ୍ୟାଟେନଙ୍କ ଜାମାତା ଲର୍ଡ ବ୍ରାବୋର୍ଣ୍ଣଙ୍କ ସହିତ ଯୋଗାଯୋଗ ସ୍ଥାପନ କରାଇଦେଲେ । ଶେଷରେ ବ୍ରାବୋର୍ଣ୍ଣ ଅନୁମତି ଦେଲେ । ମାଉଣ୍ଟବ୍ୟାଟେନଙ୍କ ଭାରତ ଶାସନ କାଳର ସମସ୍ତ ଫାଇଲ ଦେଖିବା ଦିଗରେ ସେ ହେଲେ ପ୍ରଥମ ଭାରତୀୟ । ଦିନ ରାତି ଚାହିଁରୁ ତଥ୍ୟ ସଂଗ୍ରହ କଲେ । ସାଙ୍ଗରେ ଯାଇଥିବା ତାଙ୍କ ସ୍ତ୍ରୀ ଲଣ୍ଡନରେ ଗୋଟିଏ ହୋଟେଲ ପ୍ରକୋଷ୍ଠ ମଧ୍ୟରେ ବନ୍ଦିନୀ ଭଳି ରହିଲେ । ଇଂଲଣ୍ଡର ଯୁବରାଜ ପ୍ରିନ୍‌ସ ଚାର୍ଲସଙ୍କ ବିବାହ ଉତ୍ସବ ଦେଖାରେ କିଛି ସମୟ କଟାଇଥିଲେ ଅବଶ୍ୟ । ମାତ୍ର ୩୦ ଦିନ ମଧ୍ୟରେ ୬୭୦ ଗୋଟି ଫାଇଲରୁ ଆବଶ୍ୟକୀୟ ତଥ୍ୟ ଉଦ୍ଧାର ପାଇଁ ଯଥେଷ୍ଟ ପ୍ରୟାସ କରିବାକୁ ପଡ଼ିଲା ।

ଫେରି ଆସି ସଙ୍ଗେ ସଙ୍ଗେ ମାତ୍ର ଦୁଇଟି ମାସ ମଧ୍ୟରେ ‘Partition and Independence of India: Inside story of the Mountbatten Days” ନାମକ ପୁସ୍ତକ ଲେଖିଲେ । କାରଣ, ଲ୍ୟାପିଏର ଏବଂ କୋଲିନ୍ ନାମକ ଦୁଇ ପ୍ରସିଦ୍ଧ ବ୍ୟକ୍ତି ସେ ବିଷୟରେ ଏକ ପୁସ୍ତକ ଲେଖିବାରେ ଲାଗିଥାନ୍ତି । ମାତ୍ର ଅଳ୍ପ ସମୟ ମଧ୍ୟରେ ଡ଼: ଦାସଙ୍କ ପୁସ୍ତକ ପ୍ରକାଶ ପାଇ ଦେଶ ବିଦେଶରେ ଆଦୃତ ହେଲା । ଏପରିକି ପାକିସ୍ଥାନର ଜଣେ ସେନାଧ୍ୟକ୍ଷଙ୍କ ପତ୍ନୀ ସେ ବହି ପଢ଼ି ଏକ ଅଭିନନ୍ଦନ ଜଣାଇଥିଲେ ।

୧୯୮୬ରେ ଏକ ଆନ୍ତର୍ଜାତିକ ସମ୍ମିଳନୀରେ ଯୋଗଦେବାକୁ ଗଲେ ପାରିସ୍ । ଭାରତୀୟ ଗବେଷଣା ପରିଷଦ ତାଙ୍କୁ ଲଣ୍ଡନ ପଠାଇଲେ ଭାରତ ସରକାରଙ୍କ ‘ସ୍ୱାଧୀନତା ପଥେ’ ଗ୍ରନ୍ଥ ପାଇଁ ତଥ୍ୟ ସଂଗ୍ରହ କରିବାକୁ ।

୧୯୮୭, ବର୍ଷ ଆରମ୍ଭ । ଦିଲ୍ଲୀରୁ ଲେଖିଛନ୍ତି ଶ୍ରୀଯୁକ୍ତ ବିଶ୍ୱମ୍ଭର ନାଥ ପାଣ୍ଡେ—ନିଖିଳ ଭାରତ ସ୍ୱାଧୀନତା ସଂଗ୍ରାମୀ ସଙ୍ଗଠନର ସଭାପତି । ଦିଲ୍ଲୀ ଯାଇ ତାଙ୍କୁ ସାକ୍ଷାତ କଲାରୁ ସେ ଜଣାଇଲେ ୧୯୮୫ ମସିହା ଡ଼ିସେମ୍ବରରେ ଭାରତୀୟ ଜାତୀୟ କଂଗ୍ରେସ ଶତବାର୍ଷିକୀ ପାଳନ ଅବସରରେ ଦଳଗତ ନିର୍ବିଶେଷରେ ସିଦ୍ଧାନ୍ତ ନିଆଯାଇଛି ଯେ ଜାତୀୟ କଂଗ୍ରେସର

ବିଗତ ଶହେ ବର୍ଷର ଇତିହାସ ପାଞ୍ଚଟି ଖଣ୍ଡରେ ପ୍ରକାଶ ପାଇବ । ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧୀଙ୍କ ଅଧ୍ୟକ୍ଷତାରେ ଗଠିତ କମିଟି କେଉଁ ଭାଗ କିଏ ସଂକଳନ କରିବେ ତାହା ନିର୍ଦ୍ଧାରଣ କରିଛନ୍ତି ଏବଂ ଏହି ସୂତ୍ରେ ୧୯୩୫ରୁ ୧୯୪୭ ସ୍ୱାଧୀନତା ଲାଭ ପର୍ଯ୍ୟନ୍ତ ଲେଖାଯିବା ପାଇଁ ଥିବା ଭାଗଟିର ଦାୟିତ୍ୱ ଡଃ ଦାସଙ୍କ ଉପରେ ନ୍ୟସ୍ତ କରାଯାଇଛି । ଏ ବିଷୟରେ ସମ୍ମତି ଦେବା ସଙ୍ଗେ ସଙ୍ଗେ ଏକ ହଜାର ପୃଷ୍ଠା ବିଶିଷ୍ଟ ଏ ଗ୍ରନ୍ଥଟି ପାଇଁ ଯୋଜନା ପ୍ରସ୍ତୁତିରେ ଲାଗି ପଡ଼ିଲେ ।

ସେହି ବର୍ଷ ଶ୍ରୀକ୍ଷେତ୍ରଧାମରେ ଏକ ଅପରାହ୍ନରେ ଡାକ ଆସିଲା ଓଡ଼ିଶା ରାଜ୍ୟପାଳ ଶ୍ରୀଯୁକ୍ତ ସି: ଏମ୍: ପୁନାଚ୍ଛାଙ୍କଠାରୁ । ରାଜଭବନରେ ସାକ୍ଷାତ ହେବାରୁ ସେ ତାଙ୍କୁ ଉତ୍କଳ ବିଶ୍ୱବିଦ୍ୟାଳୟ କୁଳପତି ପଦପାଇଁ ସମ୍ମତି ଦେବାକୁ କହିଲେ । କଂଗ୍ରେସର ଇତିହାସ ଲେଖା ଦାୟିତ୍ୱ, ପ୍ରଶାସନିକ କ୍ଷେତ୍ରରେ ରହିଲେ ଗବେଷଣା କାର୍ଯ୍ୟରେ ଅବହେଳା ହେବା ଏବଂ ଅଧ୍ୟାପକ ଭାବେ ଆଉରି ତିନିବର୍ଷ କାର୍ଯ୍ୟକାଳ ଥିବା ଦୃଷ୍ଟିରୁ ସେ ଏ ପଦ ଗ୍ରହଣ କରିବା ବିଷୟରେ ରାଜ୍ୟପାଳଙ୍କ ଆଗରେ ଅସାମର୍ଥ୍ୟ ପ୍ରକାଶ କଲେ ସତ୍ୟ ମାତ୍ର ଶ୍ରୀଯୁକ୍ତ ପୁନାଚ୍ଛା ସେ ସବୁ ଯୁକ୍ତିମାନଙ୍କ ମଧ୍ୟରୁ କୌଣସିଟିକୁ ଗ୍ରହଣ ନ କରି ୧୯୮୩ ଅଗଷ୍ଟ ୫ ତାରିଖରେ ଏ ସମ୍ବନ୍ଧୀୟ ଆଦେଶରେ ତାଙ୍କୁ କୁଳପତି ପଦରେ ନିଯୁକ୍ତ ଦେଲେ ଏବଂ ସେ ସେହି ପଦରେ ସେପ୍ଟେମ୍ବର ଓ ୧୦ତାରିଖଠାରୁ ଯୋଗ ଦେଲେ ।

ଶ୍ରୀଯୁକ୍ତ ପୁନାଚ୍ଛାଙ୍କ ପରେ ଓଡ଼ିଶାର ରାଜ୍ୟପାଳ ଭାବେ ଆସିଗଲେ ଶ୍ରୀଯୁକ୍ତ ବିଶ୍ୱମ୍ଭର ନାଥ ପାଣ୍ଡେ । ଆସିବା ସଙ୍ଗେ ସଙ୍ଗେ ସେ ଜଣାଇଦେଲେ କୁଳପତି ପଦରେ ରହିଲେ ମଧ୍ୟ ତାଙ୍କୁ କଂଗ୍ରେସର ଇତିହାସ ଲେଖିବାକୁ ପଡ଼ିବ ।

ଉତ୍କଳ ବିଶ୍ୱବିଦ୍ୟାଳୟ କୁଳପତି ଭାବେ ବିଶ୍ୱବିଦ୍ୟାଳୟ ମଞ୍ଜୁରୀ କମିଶନ ପାଖରୁ କେତେକ ପ୍ରଫେସର, ରିଡର ଓ ଲେକଚରର୍ ପଦ ମଞ୍ଜୁର କରିବା ସଙ୍ଗେ ସଙ୍ଗେ ଓଡ଼ିଶା ସରକାରଙ୍କ ନିକଟରୁ ବିଶ୍ୱବିଦ୍ୟାଳୟ ଶିକ୍ଷକମାନଙ୍କ ପାଇଁ ବ୍ୟକ୍ତିଗତ-ସ୍ୱୀକୃତ ପଦୋନ୍ନତି (Personal Promotion Scheame) ପ୍ରଥା ମଞ୍ଜୁର କରାଇଲେ । ଶିକ୍ଷକ, ଛାତ୍ର ଓ କର୍ମଚାରୀମାନଙ୍କ ଶ୍ରଦ୍ଧା ତାଙ୍କୁ କାର୍ଯ୍ୟ କ୍ଷେତ୍ରରେ ଯଥେଷ୍ଟ ପ୍ରେରଣା ଯୋଗାଉଥାଏ ।

ମହାବିଦ୍ୟାଳୟମାନଙ୍କ ସଂଖ୍ୟା ଦୃଷ୍ଟିରୁ ଉତ୍କଳ ବିଶ୍ୱବିଦ୍ୟାଳୟ ସମଗ୍ର ଭାରତ ବର୍ଷରେ ସର୍ବବୃହତ୍ତ ବିଶ୍ୱବିଦ୍ୟାଳୟ, ଏହା ଭାରତୀୟ କୁଳପତି ସମ୍ମିଳନୀମାନଙ୍କରେ ଏବଂ ଦିଲ୍ଲୀ ସରକାରୀ ମହଲରେ ପ୍ରତିପାଦନ କରିବା ସଙ୍ଗେ ସଙ୍ଗେ, ଓଡ଼ିଆ ଛାତ୍ରମାନଙ୍କର ପ୍ରତିଭା ଦୃଷ୍ଟିରୁ ଉତ୍କଳ ବିଶ୍ୱ-ବିଦ୍ୟାଳୟକୁ ଏକ କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟରେ ପରିଣତ କରିବାପାଇଁ ସେ ଉଦ୍ୟମ ଆରମ୍ଭ କଲେ ।

କୁଳପତି ଥିବା ବେଳେ ଆମେରିକା ଯୁକ୍ତରାଷ୍ଟ୍ରରୁ ନିମନ୍ତ୍ରଣ ପାଇ କାଲିଫର୍ଣ୍ଣିଆ ବିଶ୍ୱବିଦ୍ୟାଳୟରେ ଅନୁଷ୍ଠିତ ହେଉଥିବା ଏକ ଆନ୍ତର୍ଜାତିକ ଐତିହାସିକ ସମ୍ମିଳନୀରେ ଯୋଗ ଦେଲେ । ପୁଣି କଂଗ୍ରେସ ଇତିହାସ ପ୍ରଣୟନ ଆଉ ଏକ ଜଞ୍ଜାଳ ।

୧୯୮୫ ମସିହାରେ ଉଚ୍ଚତର ଗବେଷଣା ପାଇଁ ସେ ବିଶ୍ୱବିଦ୍ୟାଳୟ ମଞ୍ଜୁରୀ କମିଶନ ଦ୍ୱାରା ଏକ ଜାତୀୟ ବୃତ୍ତି ପାଇବା ପାଇଁ ମନୋନୀତ ହେଲେ । ସ୍ୱାଧୀନ ଭାରତର ବୈଦେଶିକ ନୀତି ଉପରେ ପୁସ୍ତକ ପ୍ରଣୟନ ପାଇଁ ଆଗ୍ରହ ବଢିଲା । କୁଳପତି ପଦ ରହିବେ କିମ୍ବା ଛାଡ଼ିବେ ଏହି ଦ୍ୱନ୍ଦ୍ୱରେ ପଡ଼ି ଶେଷକୁ ଇସ୍ତଫା ଦେଇ ମେ ମାସ ପ୍ରଥମରେ ଜାତୀୟ ବୃତ୍ତିରେ ଯୋଗ ଦେଲେ । କୁଳପତି ପଦ ତ୍ୟାଗ କରିବା ପୂର୍ବରୁ ବାଣୀବିହାରର ସଂରକ୍ଷଣ ପାଇଁ ପ୍ରଚୁର ଅର୍ଥ ଦାନର ନିର୍ଭର ପ୍ରତିଶ୍ରୁତି ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ପାଖରୁ ପାଇ ଆନନ୍ଦରେ ଦାୟିତ୍ୱ ହସ୍ତାନ୍ତର କଲେ । କୁଳପତି ପଦର ଶେଷ କେତେ ଦିନ ମଧ୍ୟରେ ଛାତ୍ର ଓ ଶିକ୍ଷକମାନେ ଯେପରି ଭାବରେ ତାଙ୍କ ପ୍ରତି ସେମାନଙ୍କର ମମତା ଓ ଶ୍ରଦ୍ଧା ପ୍ରଦର୍ଶନ କଲେ ତାହା ତାଙ୍କୁ ବିଚଳିତ କରିଥିଲା । ସାର୍ଥ ଶିକ୍ଷକ ଜୀବନର ସାର୍ଥକତା ସେହି କେତୋଟି ଦୃଶ୍ୟ ମଧ୍ୟରେ ଉପଭୋଗ କରି ସେ ନିଜକୁ ଭାଗ୍ୟବାନ ମନେ କରୁଥିଲେ ।

ନୂତନ କାର୍ଯ୍ୟରେ ଯୋଗଦେଇ ୧୯୮୫ ସେପ୍ଟେମ୍ବର ମାସରେ ପଶ୍ଚିମ ଜର୍ମାନୀର Stuttgartଠାରେ ଅନୁଷ୍ଠିତ ଆନ୍ତର୍ଜାତିକ ସମ୍ମିଳନୀରେ ଭାରତର ପ୍ରତିନିଧିତ୍ୱ କଲେ । ପୁଣି ଅକ୍ଟୋବର ମାସରେ ଆମେରିକା ଯୁକ୍ତରାଷ୍ଟ୍ରର ବିଭିନ୍ନ ସ୍ଥାନରେ ଭାରତୀୟ ଜାତୀୟ କଂଗ୍ରେସର ଶତବାର୍ଷିକୀ ଉପଲକ୍ଷେ କେତେ ଗୁଡ଼ିଏ ଭାଷଣ ଦେବାପାଇଁ ନିମନ୍ତ୍ରଣ ମିଳିଲା ।

ତିନ ସପ୍ତାହ ସେହି ଗସ୍ତ ମଧ୍ୟରେ ଅନେକ ବଶିଷ୍ଟ ଶିକ୍ଷାବିତ୍, ଗଣ୍ୟମାନ୍ୟ ଓ ବୁଦ୍ଧିଜୀବୀମାନଙ୍କ ଆଗରେ ନିଜ ଦେଶର ସ୍ୱାଧୀନତା ସଂଗ୍ରାମର ତାତ୍ପର୍ଯ୍ୟ ବିଶ୍ଳେଷଣକରି ଆନନ୍ଦଲାଭ କଲେ ।

ଇତିହାସ ଅଧ୍ୟାପକ ଥିବାବେଳେ କଳିଙ୍ଗ ଭୂମିର ଅତୀତ ଗୌରବକୁ ଆଧୁନିକ ବିଶ୍ୱ ସମ୍ମୁଖରେ ଉପସ୍ଥାପନ କରିବା ସ୍ୱପ୍ନ ଦେଖୁଥିଲେ । ଲଣ୍ଡନରେ ଗୋଟିଏ ଭାରତୀୟ ଐତିହାସିକ ଚଳଚ୍ଚିତ୍ର ଦେଖି ତାଙ୍କର କେତେଜଣ ଇଂରେଜ ଅଧ୍ୟାପକ ବନ୍ଧୁ ଉପହାସ କରି କହିଲେ, "ଭାରତୀୟମାନଙ୍କର ଐତିହାସିକ ସତ୍ୟ ଅପେକ୍ଷା କାଳ୍ପନିକ କାହାଣୀ ପ୍ରତି ଅଧିକତର ଆଗ୍ରହ । ସତ୍ୟର ଅପଳାପ ଯୋଗୁଁ ଇତିହାସକୁ ବିକୃତ କରିବାରେ ସୁଦ୍ଧା ସେମାନେ ପଶ୍ଚାତ୍‌ପଦ ହୁଅନ୍ତି ନାହିଁ । ଏ ଉକ୍ତିର ଯଥାର୍ଥତା ଉପଲବ୍ଧି ପାଇଁ ପାଶ୍ଚାତ୍ୟ ଐତିହାସିକ ଚଳଚିତ୍ର କେତୋଟି ଦେଖି ନିଜେ 'ସମ୍ରାଟ ଅଶୋକ'ଙ୍କ କଳିଙ୍ଗଯୁଦ୍ଧ ଭିତ୍ତିରେ ଏକ ଚଳଚିତ୍ର ପ୍ରସ୍ତୁତି ପାଇଁ ମନସ୍ଥ କଲେ ।

ଅପରଜେୟ କଳିଙ୍ଗର ବୀରତ୍ୱକୁ ବିଶ୍ୱସମକ୍ଷକୁ ଆଣିବା, ଚଣ୍ଡାଶୋକଙ୍କ ଧର୍ମାଶୋକରେ ପରିବର୍ତ୍ତିତ ହେବାର କାରଣ ଏବଂ ସେ କାଳରେ ସାରଭାରତରେ ସ୍ୱାଧୀନଚେତା କଳିଙ୍ଗବାସୀଙ୍କ ସ୍ୱଦେଶଭକ୍ତି ପ୍ରଖ୍ୟାପନ ଥିଲା ଏହି ଚଳଚିତ୍ର ନିର୍ମାଣର ଉଦ୍ଦେଶ୍ୟ । ତଦାନୀନ୍ତନ କେନ୍ଦ୍ର-ମନ୍ତ୍ରୀ ଶ୍ରୀ ବିଦ୍ୟାଚରଣ ଶୁକ୍ଳ ବମ୍ବେର ବିଶିଷ୍ଟ ଚଳଚିତ୍ର ନିର୍ମାତା ଓ ନିର୍ଦ୍ଦେଶକମାନଙ୍କୁ ଏହାର ନିର୍ମାଣ ପାଇଁ ଅନୁରୋଧ କଲେ ଓ ସେହି ନିର୍ଦ୍ଦେଶ ଅନୁସାରେ ଚଳଚିତ୍ର ନିର୍ମାତା, ନିର୍ଦ୍ଦେଶକ ଓ: ପି: ରାଲ୍‌ହାନ୍ ଓଲ୍ଡର ଦାସଙ୍କୁ ବମ୍ବେ ଡକାଇଲେ 'ସମ୍ରାଟ ଅଶୋକ'ର ବିଷୟବସ୍ତୁ ଉପସ୍ଥାପନ କରିବାପାଇଁ । ହୋଟେଲ୍ ପ୍ରେସିଡେଣ୍ଟ୍‌ର ଏକ କକ୍ଷମଧ୍ୟରେ ଦୀର୍ଘ ପାଞ୍ଚଘଣ୍ଟାକାଳ ଦୃଶ୍ୟ ପରେ ଦୃଶ୍ୟ ବର୍ଣ୍ଣନା ଶୁଣିବାପରେ ରାଲ୍‌ହାନ୍ ମନ୍ତବ୍ୟ ଦେଲେ "କଳିଙ୍ଗ ଯୁଦ୍ଧର ଯେପରି ବର୍ଣ୍ଣନା କରାଯାଇଛି, ଚଳ-ଚିତ୍ରରେ ତାର ଚିତ୍ରାୟନ ପାଇଁ କେବଳ ହଲିଉଡ୍‌ର ଚିତ୍ର ନିର୍ମାତାମାନେ ସମର୍ଥ ହେବେ । କାରଣ ସେମାନେ ବିଶ୍ୱଯୁଦ୍ଧର ଭୟାବହ ଦୃଶ୍ୟମାନ ଚଳଚିତ୍ର ଆକାରରେ ଦେଖାଇ ପାରିଛନ୍ତି । କୋଟି କୋଟି ଟଙ୍କା ବ୍ୟୟ ନ କଲେ ଏପରି ଚଳଚ୍ଚିତ୍ର ନିର୍ମାଣ ଅସମ୍ଭବ ।" ସେମାନଙ୍କୁ ସାହସ ଓ ପ୍ରେରଣା ଦେଇ ହଲିଉଡ୍‌ର ସମର୍ଥନ ପାଇଁ ଉଦ୍ୟମ କରିବାକୁ ଅନୁରୋଧ

ଜଣେ ଉଚ୍ଚତମ ତାସ । ପୁଣି ଲିଖିତ ପ୍ରତିଶ୍ରୁତି ଦେଲେ ତାହାଙ୍କ ଲେଖା ଓ ପରିଶ୍ରମ ପାଇଁ କପର୍ଦ୍ଦକଟିଏ ମୂଲ୍ୟ ଗ୍ରହଣ କରିବେ ନାହିଁ । ସେହି ମର୍ମରେ ବମ୍ବେର ପ୍ରସିଦ୍ଧ ଅଭିନେତା ଅଭିନେତ୍ରୀଙ୍କୁ ଆବେଦନ କରାଯିବାରୁ ସେମାନେ ମଧ୍ୟ ବିନା ପାରିଶ୍ରମିକରେ ଏଥିରେ ଅଭିନୟ କରିବାକୁ ରାଜି ହେଲେ ।

ରଜହାନ୍ ସାହାଯ୍ୟ ପାଇଁ ଗଲେ ଜାପାନ ଓ ଆମେରିକା । ହଲିଉଡ଼୍‌ର ପ୍ରସିଦ୍ଧ ଚଳଚ୍ଚିତ୍ର-ନାଟ୍ୟରୂପ ଲେଖକ ଆଣ୍ଡ୍ରି ସିନ୍‌କ୍ଲେୟାର୍‌ଙ୍କୁ ଅଣାଇଲେ ଓ ତାଙ୍କ ସହିତ ଉକ୍ତର ଦାସଙ୍କୁ ଏକତ୍ର ରଖାଇବାର ବନ୍ଦୋବସ୍ତ କଲେ । ଫଳରେ ଚିତ୍ର-ନାଟ୍ୟର ଚୂଡ଼ାନ୍ତ ରୂପ ଦିଆଗଲା । ହଲିଉଡ କ୍ୟାମେରାମ୍ୟାନ୍‌ମାନେ ମଧ୍ୟ ଭାରତକୁ ଆସି ସେମାନଙ୍କ କ୍ୟାମେରାରେ ଯୁଦ୍ଧ ଦୃଶ୍ୟଗୁଡ଼ିକ ଦେଖାଇବା ପାଇଁ ସମ୍ମତ ହେଲେ ।

ତେଣେ, ଭାରତର ତଦାନୀନ୍ତନ ପ୍ରଧାନମନ୍ତ୍ରୀ ମୋରାରଜୀ ଦେଶାଇ, ପ୍ରଧାନ ସେନାପତି ଏବଂ ଅନ୍ୟ ବିଶିଷ୍ଟ ବ୍ୟକ୍ତିମାନେ ସେମାନଙ୍କର ସମର୍ଥନ ଜ୍ଞାପନ କଲେ । ଐତିହାସିକ ସତ୍ୟତା ରକ୍ଷା କରିବା ପାଇଁ ତାହାଙ୍କୁ କଠୋର ନିର୍ଦ୍ଦେଶ ଦିଆଗଲେ । ଭାରତୀୟ ଜାତୀୟ ପତାକାରେ 'ଅଶୋକ ଚକ୍ର'ର ବିଶେଷତ୍ୱ ଏହି ଚଳଚିତ୍ର ମାଧ୍ୟମରେ ବିଶ୍ୱଜନତା ସମକ୍ଷରେ ଯେପରି ଉପସ୍ଥାପିତ ହୋଇ ପାରିବ । ସୈନ୍ୟବାହିନୀର ଦଶସହସ୍ର ଅଶ୍ୱାରୋହୀ ସେ ଯୁଗର ପୋଷାକ ପିନ୍ଧି ଯୁଦ୍ଧ ଦୃଶ୍ୟମାନଙ୍କରେ ଭାଗ ନେବେ । ସେହି ସଂଖ୍ୟା କ୍ୟାମେରାରେ ଲକ୍ଷ ଲକ୍ଷ ସଂଖ୍ୟା ଆକାରରେ ଦେଖାଇବା ପାଇଁ ହଲିଉଡ୍ କ୍ୟାମେରାମ୍ୟାନ୍ ସମର୍ଥ ହେବେ ।

ରଜହାନ ଓଡ଼ିଶା ଆସି କଳିଙ୍ଗ ଯୁଦ୍ଧ ପାଇଁ ବିଭିନ୍ନ ସ୍ଥାନ ନିରୂପଣ କଲେ । ବମ୍ବେ ଏବଂ ଭୁବନେଶ୍ୱରଠାରେ ପ୍ରେସ କନ୍‌ଫରେନ୍‌ସରେ ଘୋଷଣା କରାଗଲା ଯେ ଏପରି ଚଳଚିତ୍ରରୁ ଅର୍ଜିତ ଅର୍ଥ ଅନାଥାଶ୍ରମ-ମାନଙ୍କୁ ଦାନ କରାଯିବ । ଏହା ଏକ Missionary Picture ରୂପେ ଅନ୍ୟ ଦେଶମାନଙ୍କରେ ପ୍ରଦର୍ଶିତ ହେବ ।

ତେଣେ ଜାପାନୀ ଚଳଚିତ୍ର କର୍ମଚାରୀମାନେ ସାହାଯ୍ୟ କରିବା ପାଇଁ ପ୍ରତିଶ୍ରୁତି ଦେଲେ । ଚଳଚିତ୍ରଟି ଜାପାନୀ ଭାଷାକୁ ଭାଷାନ୍ତରିତ କରିବାର ବ୍ୟବସ୍ଥା ରହିଲା । ଏପରିକି କଳିଙ୍ଗ ଯୁଦ୍ଧର ବୀର ସୈନିକ-ମାନଙ୍କ ଭୂମିକାରେ ଜାପାନୀ ଅଭିନେତାମାନେ ଅଂଶଗ୍ରହଣ କରି

ସେମାନଙ୍କର ଅଭିନୟ କୁଶଳ ଦେଖାଇବା ପାଇଁ ଆଗ୍ରହ ପ୍ରକାଶ କଲେ । ଚଳଚ୍ଚିତ୍ରଟିକୁ ଇଂରାଜୀ ଭାଷାରେ କରିବା ପାଇଁ ହଲିଉଡ଼ ଅଗ୍ରେ ସର୍ତ୍ତ କରିଥିଲେ । ହିନ୍ଦୀ, ଇଂରାଜୀ ଓ ଜାପାନ ଏହିପରି ଏକ ତ୍ରିଭାଷ ଚଳଚ୍ଚିତ୍ରର ଯୋଜନା ନିମନ୍ତେ ଭାରତରେ ଏହା ଥିଲା ପ୍ରଥମ ପଦକ୍ଷେପ ।

ବଜେଟ୍ ବଢ଼ି ବଢ଼ି ଚାଲିଲା । ଦଶ କମ୍ବା ୧୫ କୋଟି ଟଙ୍କାର ଅଟକଳ ରାଲହାନ ପ୍ରସ୍ତୁତ କଲେ । ଅବଶ୍ୟ ଏହା ଫିଲ୍ମ ଜଗତରେ ଏକ ପ୍ରକାର ଅତିରଞ୍ଜିତ ପ୍ରଚାର ମଧ୍ୟ ହୋଇପାରେ । ତଥାପି ପ୍ରାୟ ଦୁଇକୋଟି ଟଙ୍କା ଖର୍ଚ୍ଚ ହେବ ବୋଲି ଅନୁମାନ ହେଉଥିଲା । ରାଲହାନ କମ୍ପାନୀ ଋଣ ପାଇଁ ଲାଗି ପଡ଼ିଥାନ୍ତି ।

ପ୍ରାୟ ଲକ୍ଷାଧିକ ଟଙ୍କା ବ୍ୟୟ ପରେ ପ୍ରାରମ୍ଭିକ କାର୍ଯ୍ୟ ପାଇଁ ବ୍ୟବସ୍ଥା ଆରମ୍ଭ ହେଲା । ରାଲହାନ ମହାରାଷ୍ଟ୍ର ସରକାରଙ୍କ ନିକଟରୁ ବମ୍ବେ ଫିଲ୍ମ ସିଟି ପାଖରେ ଛଅ ଏକର ଜମି ଲିଜ୍ ନେବାକୁ ପ୍ରାୟ ୮୦ ହଜାର ଟଙ୍କା ଦାଖଲ କଲେ । ସେହି ସ୍ଥାନରେ କୃତ୍ରିମ ରାଜଧାନୀ ଓ ରାଜପ୍ରାସାଦ ଇତ୍ୟାଦି ନିର୍ମିତ କରାଯିବ । ଯଥା—କଳିଙ୍ଗ ରାଜଧାନୀ ତୋଷାଳି, ମଗଧ ରାଜଧାନୀ ପାଟଳିପୁତ୍ର ଇତ୍ୟାଦି । ସେଥି ମଧ୍ୟରେ Indoor Shooting ହେବ । ଫିଲ୍ମ ସିଟିର ଇଲେକ୍ଟ୍ରିକ୍ Supply ବିନା ଅନ୍ୟ ସ୍ଥାନରେ ସେପରି Studio କରିବା ଅସମ୍ଭବ ।

ସବୁ ପ୍ରସ୍ତୁତ ହୋଇ ସାରିଲା ପରେ ହଠାତ୍ ହେଲା ରାଜନୈତିକ ବଜ୍ରାଘାତ । ମହାରାଷ୍ଟ୍ରର ସର୍ବାଧିକ ବଳିଷ୍ଠ ଓ ଉଚ୍ଚ କର୍ମ କ୍ଷମତାଶୀଳ ରାଜମନ୍ତ୍ରୀ [illegible] ତାଙ୍କୁ କୋଡ଼ିଏ ଲକ୍ଷ ଟଙ୍କା ଗୋପନରେ ଦେବା ପାଇଁ ରାଲହାନଙ୍କୁ କହିଲେ । ନଚେତ୍ ସେ ଜମି ଲିଜ୍ ଦେବେ ନାହିଁ । ରାଲହାନ ଏଥିରେ ରାଜି ହେଲେ ନାହିଁ । ରାଜମନ୍ତ୍ରୀଙ୍କ ଯୁକ୍ତି ହେଲା, ଯଦି ଦଶ କମ୍ବା ୧୫ [illegible] ଟଙ୍କା ବ୍ୟୟକରି ତୁମର ଚଳଚ୍ଚିତ୍ର ନିର୍ମାଣ କରିବ, କାହିଁକି [illegible] ୨୦ ଲକ୍ଷ ଟଙ୍କା ନ ଦେବ । ରାଲହାନ ଯୁକ୍ତିକଲେ, ଅଧିକାଂଶ [illegible] ହଲିଉଡ଼ ଓ ଜାପାନ ବହନ କରିବେ ଏବଂ ଋଣ ଆକାରରେ [illegible] ଏବ । ୨୦ ଲକ୍ଷ ଟଙ୍କା ଅନ୍ଧକାରରେ ଦେବା ପାଇଁ ସେ ସମର୍ଥ ହେ[illegible]ପରି ?

[illegible] ଲିଜ୍ ମିଳିଲା ନାହିଁ । ରାଲହାନ ତାଙ୍କୁ ଅଭିଶାପ ଦେବାକୁ ଲାଗିଲେ । [illegible] ପାଇଁ ତାଙ୍କର ସର୍ବନାଶ ହେଲା ବୋଲି ଧିକ୍କାର କରି

ବାରମ୍ବାର ଚିଠି ଲେଖିଲେ । ଧର୍ଲି ଯାଇ ସେଠାରେ ଚେଷ୍ଟା କରିବା ଅସମ୍ଭବ । ଷ୍ଟାଲବର୍ଗ ଅନ୍ୟ ଚଳଚ୍ଚିତ୍ର ନିର୍ମାଣ କରିବାରେ ଲାଗିପଡ଼ିଲେ । ତାଙ୍କ ସହିତ ସମ୍ପର୍କ ଛିନ୍ନ ହେଲା ।

'ସମ୍ରାଟ ଅଶୋକ' ପାଇଁ ତାଙ୍କର ଅନେକ ଅର୍ଥ ବ୍ୟୟ ହୋଇଥିଲା । ବିଭିନ୍ନ ପ୍ରାଚୀନ ସ୍ଥାନର ସ୍ଥାପତ୍ୟ, କଳା ଓ ଭାସ୍କର୍ଯ୍ୟ ମଧ୍ୟରୁ ସେ ଯୁଗର ପୋଷାକପତ୍ର ଓ ଅସ୍ତ୍ରଶସ୍ତ୍ର ଇତ୍ୟାଦିର ଖୋଜ ନେବା ପାଇଁ ଯିବାକୁ ପଡ଼ିଥିଲା । କେତେ ବହି ପଢ଼ି, କେତେ ତଥ୍ୟ ସଂଗ୍ରହ କରି କେତେ କଷ୍ଟରେ ଏହା ଲେଖା ହୋଇଥିଲା । ଚଳଚ୍ଚିତ୍ର ଲେଖାରେ ଅଭିଜ୍ଞତା ହାସଲ ଉଦ୍ଦେଶ୍ୟରେ ଓଡ଼ିଆରେ ଏକ ସାମାଜିକ କାହାଣୀ ଲେଖି ନିଜ ଘରେ ଏକମାସ ପାଇଁ ତାହାର ସୁଟିଂ କାମ କରାଇଲେ । ସେହି ଫିଲ୍ମ 'ସୁନା ସଂସାର' । ଶ୍ରୀ ଶିଶିର ମିଶ୍ର ତାହାର ନିର୍ଦ୍ଦେଶନା ଦେଇଥିଲେ । ସେଥିରେ ମଧ୍ୟ କିଛି ବ୍ୟୟ ହେଲା । କେବଳ ବୃହତ୍ତର ଫିଲ୍ମପାଇଁ ଈଷତ୍ ଶିକ୍ଷାଲାଭ କରିବା ଥିଲା ଉଦ୍ଦେଶ୍ୟ—କିପରି ଭାବରେ ତାଙ୍କର ବର୍ଣ୍ଣିତ ଦୃଶ୍ୟ କ୍ୟାମେରାରେ ପ୍ରତିଫଳିତ ହେଉଛି ସେତକ ଜାଣିବା ପାଇଁ ।

କିନ୍ତୁ ସମସ୍ତ ଚେଷ୍ଟା ପରେ ଆଧୁନିକ ଭାରତର ଦୁର୍ନୀତି ସାଗରରେ 'ସମ୍ରାଟ ଅଶୋକ'ର ସଲିଳ ସମାଧି ଘଟିଲା । ଜଣେ ମାତ୍ର କ୍ଷମତାଶାଳୀ କୁଚକ୍ରୀ ବ୍ୟକ୍ତିର ସ୍ୱାର୍ଥ ଓ ଅର୍ଥ ପାଇଁ ଏପରି ଏକ ଜାତୀୟ ଯୋଜନା ଧ୍ୱଂସ ହୋଇଗଲା ଏବଂ ଚଳଚ୍ଚିତ୍ର ନିର୍ମାତାମାନେ ଏପରି ସହଜରେ ସେ ଯୋଜନା ଷଡ଼ଯନ୍ତ୍ରକୁ ଭୁଲିଯାଇ ପାରିଲେ । ପାପଭାରରେ ସେ ଦୁର୍ନୀତିଗ୍ରସ୍ତ ରାଜମନ୍ତ୍ରୀଙ୍କର ପତନ ଘଟିଲା ଅବଶ୍ୟ, ମାତ୍ର 'ସମ୍ରାଟ ଅଶୋକ'ର ଆଉ ଉତ୍ଥାନ ହେଲା ନାହିଁ ।

ଏ ସମସ୍ତ ମାନବିକ ଗୁଣ ଓ ଦେଶପ୍ରେମରେ ଭରା ଉତ୍କଳର ଦାସଙ୍କର ଛାତ୍ରସମାଜ ପ୍ରତି ଥାଏ ଗଭୀର ଦୁର୍ବଳତା । ସମଗ୍ର ଛାତ୍ରସମାଜ ଯେପରି ତାଙ୍କର ନିଜ ପୁତ୍ର କନ୍ୟା । ଜଣେ ଇତିହାସ ଶିକ୍ଷକ ଭାବେ ଇତିହାସର ସମସ୍ତ ବିପ୍ଳବ, ଗୌରବ ଓ ସ୍ମରଣୀୟ ଚରିତ୍ରକୁ ଏହି ଛାତ୍ରସମାଜ ମଧ୍ୟରେ ସେ ଦେଖନ୍ତି । କହନ୍ତି, "ଆଗାମୀ ଇତିହାସ, ଆଜିର ଯୁବକ ହାତରେ ।"

ସମୟାନୁବର୍ତ୍ତିତା ତାଙ୍କର ଅନ୍ୟ ଏକ ଗୁଣ । ଘରେ, ବାହାରେ, ବିଦେଶରେ, କ୍ଳାସ, ଅଫିସ, ସଭାସମିତି ଯେକୌଣସିଠାରେ ନିର୍ଦ୍ଦିଷ୍ଟ ସମୟରେ ଏପାଖ ସେପାଖ ତାଙ୍କ ପାଖରେ ଦେଖା ଯାଏନାହିଁ ।

ଅନ୍ୟାୟ ଓ ମିଥ୍ୟାକୁ ସେ ବରଦାସ୍ତ କରି ପାରନ୍ତି ନାହିଁ । ସେ ଈଶ୍ୱର ବିଶ୍ୱାସୀ ସତ ମାତ୍ର ଆପଣାର କର୍ତ୍ତବ୍ୟ ଓ ଭାଗ୍ୟ ଉପରେ ଅଧିକ ଗୁରୁତ୍ୱ ଦିଅନ୍ତି ।

ସେ ହେଉଛନ୍ତି ପରିହାସ ପ୍ରିୟ । କୌଣସି କାରଣ ଯୋଗୁ ଯଦି ଘରେ କେହି ଦୁଃଖ କରିଥାଏ ବା ରାଗିଥାଏ, ସେ ପରିହାସ ପୂର୍ଣ୍ଣ କଥା କହି ପରିସ୍ଥିତିକୁ ହାଲୁକା କରିଦିଅନ୍ତି । ଅବସର ସମୟରେ ବସି ବସି ଚିତ୍ର ଆଙ୍କନ୍ତି କିମ୍ବା ଉପନ୍ୟାସ ଲେଖନ୍ତି ।

ଅଳ୍ପ କେତେ ବର୍ଷ ତଳର କଥା, ପ୍ରବଳ ବନ୍ୟା ହେତୁ ଭୋଗରାଇରେ ଦୁର୍ଭିକ୍ଷ ପଡ଼ିଥାଏ । ଖବର ପାଇ ସେ ସଙ୍ଗେ ସଙ୍ଗେ ଘରକୁ ଗଲେ । ତାଙ୍କ ଆସିବା ଖବର ଅତ୍ୟନ୍ତ ବେଗରେ ପ୍ରଚାର ହୋଇଗଲା । ସନ୍ଧ୍ୟାସୁଦ୍ଧା ଅସଂଖ୍ୟ ଅସହାୟ କଙ୍କାଳସାର ବୃଦ୍ଧ ବୃଦ୍ଧା, ସ୍ତ୍ରୀ ଶିଶୁ ଧାଉଁବାକୁ ଆସି-ଗଲେ । ରାତି ବଢ଼ିବା ସଙ୍ଗେ ସଙ୍ଗେ ସେମାନଙ୍କ ସଂଖ୍ୟା ବୃଦ୍ଧି ପାଇ ଚାଲିଲା । ମନ୍ମଥନାଥବାବୁ ସମସ୍ତଙ୍କୁ ଆଶ୍ୱାସନା ଦେଇ ନିଜର କର୍ମଚାରୀ-ମାନଙ୍କୁ ଆଦେଶ ଦେଲେ, 'ମୋର ସମସ୍ତ ଧାନ ଗୁଦାମ ଅମାର ଖୋଲିଦିଅ ଏବଂ ସମସ୍ତଙ୍କୁ ବାଣ୍ଟିଦିଅ ।' ତାଛଡ଼ା ସାହାଯ୍ୟ ପାଇଁ ନେଇ ଯାଇଥିବା ସମସ୍ତ ଅର୍ଥ ବାଣ୍ଟି ସାରି ଫେରିବା ସମୟରେ ବସ୍‌ରେ ବସିବାବେଳେ ଯେଉଁ ଶେଷ ହାତଟି ଝିଅଟା ପାଖକୁ ସାହାଯ୍ୟ ଆଶାରେ ଲମ୍ବି ଆସିଥିଲା, ତାକୁ ନିଜର ମନିବ୍ୟାଗଟି ଶେଷ ଟଙ୍କା ସହ ବଢ଼ାଇ ଦେଇଥିଲେ ।

ବିନମ୍ରତା, ସରଳତା, ଧୈର୍ଯ୍ୟଶୀଳତା, ସତ୍ୟ ତଥା ସ୍ପଷ୍ଟ-ବାଦିତା, ନିର୍ଭୀକତା, କର୍ମଠତା ଏବଂ ସ୍ନେହପରାୟଣତାର ମୂର୍ତ୍ତିମନ୍ତ ପ୍ରତୀକ ଡକ୍ଟର ମନ୍ମଥନାଥ ଦାସ ।

# ନାଟ୍ୟାଚାର୍ଯ୍ୟ ରଘୁନାଥ ପଣ୍ଡା

ଶ୍ରୀ ପରମେଶ୍ୱର ତ୍ରିପାଠୀ

ଭାରତୀୟ ନାଟକର ଉତ୍ପତ୍ତି କେବେ ଓ କିପରି ହୋଇଥିଲା, ତାହା କହିବା ସହଜ ନୁହେଁ । ଋକ୍‌ବେଦର ସମ୍ବାଦମାନଙ୍କରେ ନାଟକୀୟ ତତ୍ତ୍ୱର ସନ୍ଧାନ ମିଳିଥାଏ । ତତ୍ପରେ ଭରତ ମୁନି ନିୟମ-ଶୃଙ୍ଖଳାମାନ ଅଙ୍ଗୀଭୂତ କରି ନାଟ୍ୟଶାସ୍ତ୍ର ପ୍ରଣୟନ କରିଥିଲେ । ଋଗ୍‌ବେଦରୁ ପାଠ୍ୟ, ସାମ ବେଦରୁ ଗୀତ, ଯଜୁର୍ବେଦରୁ ଅଭିନୟ ଓ ଅଥର୍ବ ବେଦରୁ ରସ ଗ୍ରହଣ କରି ବ୍ରହ୍ମା 'ନାଟ୍ୟ ବେଦ' ସୃଷ୍ଟି କଲେ ।

'ଜଗ୍ରାହ ପାଠ୍ୟଂ ଋଗ୍‌ବେଦାତ୍ସାମଭ୍ୟୋ ଗୀତମେବ ଚ
ଯଜୁର୍ବେଦାଦଭିନୟାନ ରସାନାଥର୍ବଣାଦପି ।
ବେଦୋପବେଦୈଃ ସମ୍ବନ୍ଧୋ ନାଟ୍ୟ ବେଦୋ ମହାତ୍ମନାମ୍
ଏବଂ ଭଗବତା ସୃଷ୍ଟୋ ବ୍ରହ୍ମଣା ସର୍ବବେଦିନା ।'

ବିଶ୍ୱକର୍ମା ରଙ୍ଗମଞ୍ଚ ରଚନା କଲେ, ଶିବ ପାର୍ବତୀ ତାଣ୍ଡବ ଓ ଲାସ୍ୟ ନୃତ୍ୟ କଲେ । ବିଷ୍ଣୁ ସମସ୍ତ କାର୍ଯ୍ୟର ପୂର୍ଣ୍ଣତା ପ୍ରଦାନ କରି ଭରତଙ୍କୁ ତାଙ୍କ ଶହେ ପୁଅଙ୍କ ସହାୟତାରେ ଅଭିନୟ ଆରମ୍ଭ କରିବାକୁ କହିଥିଲେ । *

ଯେଉଁ ନାଟ୍ୟ ଶାସ୍ତ୍ରକୁ ପଞ୍ଚମ ବେଦ ବୋଲି ମୁନିଋଷିମାନେ ଅଭିହିତ କରି ଯାଇଛନ୍ତି ସେହି ପଞ୍ଚମ ବେଦର ଗାୟନରେ ଯେଉଁମାନେ ଅଭ୍ୟସ୍ତ ସେମାନଙ୍କୁ ଆମ ଓଡ଼ିଶାରେ ସାଧାରଣତଃ କହିଥାନ୍ତି—

'ସଲ୍ଲଜ ଗାଏ, ନିଲଜ ବାଏ
ଅତି ବେହିଆ ଯେ, ସେ ନାଚି ନାଚି ଯାଏ ।'

* ଯୁଗେ ଯୁଗେ ନାଟ୍ୟ ସାହିତ୍ୟ — ଶ୍ରୀ ଗୌରକିଶୋର ଦାସ, ପୃଷ୍ଠା-୮୧

କିନ୍ତୁ ଜଣେ ପୋଷିତ ଅଭିନେତା ହେବାପାଇଁ ଯେଉଁ ସବୁ ସଦ୍‌ଗୁଣର ଆବଶ୍ୟକତା ପଡ଼ିଥାଏ ତାହା ଦେଉଛୁ—

"ନେତା, ବିନୀତୋ, ମଧୁର ସ୍ତ୍ୟାଗୀ, ଦକ୍ଷଃ, ପ୍ରିୟଂବଦଃ
ରକ୍ତ ଲୋକାଃ, ଶୁଚି ବାଂଗ୍ମୀ ସ୍ତୁଢ଼ବଂଶ ସ୍ଥିରୋଯୁବା ।
ବୁଦ୍ଧି, ସୁତ୍ସାହ, ସ୍ମୃତି ପ୍ରଜ୍ଞ, କଳାମାନ ସମନ୍ୱିତଃ
ଶୂରୋ ଦୃଢ଼ଶ୍ଚ ତେଜସ୍ୱୀ, ଶାସ୍ତ୍ର ଚକ୍ଷୁଶ୍ଚ ଧାର୍ମିକଃ ।"

(ଅର୍ଥାତ୍ ନାଟକର ନାୟକ ବିନୀତ, ମଧୁର, ତ୍ୟାଗୀ, ଦକ୍ଷ, ପ୍ରିୟଭାଷୀ, ଲୋକପ୍ରିୟ, ଶୁଚିମନ୍ତ, ବାକ୍ ପଟୁ, ଉଚ୍ଚକୁଳୋଦ୍ଭବ, ସ୍ଥିର, ଯୁବକ, ବୁଦ୍ଧିମାନ, ଉତ୍ସାହୀ, ସ୍ମୃତି ଯୁକ୍ତ, ପ୍ରଜ୍ଞାବାନ, ସ୍ୱାଭିମାନୀ, ଶୂର, ତେଜସ୍ୱୀ, ଦୃଢ଼, ଶାସ୍ତ୍ରଜ୍ଞ ଏବଂ ଧାର୍ମିକ ହେବା ଉଚିତ୍) ।

ଜଣେ ସଫଳ ନାଟ୍ୟକାର, ନିର୍ଦ୍ଦେଶକ, ଅଭିନେତା, କବି, ସଂଗଠକ ଏବଂ ପ୍ରଯୋଜକ ଭାବରେ ଯାହା ଜଗତରେ ଅମ୍ଳାନ ପ୍ରତିଭା ରୂପେ ପ୍ରତିଭାତ ହୋଇଥିବା ସମ୍ରାଟ ନାଟ୍ୟାଗ୍ରଣୀ ରଘୁନାଥ ପଣ୍ଡାଙ୍କ ଜୀବନକୁ ଅନୁଶୀଳନ କଲାପରେ ଉପରୋକ୍ତ ଲକ୍ଷଣ ସବୁ ଥିବାର ଜଣାପଡେ । ଶ୍ରୀଯୁକ୍ତ ପଣ୍ଡା ଯୁକ୍ତ ମଞ୍ଚ ଅପେରା ଜଗତରେ ଏକ ଜ୍ୟୋତିଷ୍କ ରୂପେ ଆଜି ବିରାଜିତ । ବାଲେଶ୍ୱର ଜିଲ୍ଲାର ଭଦ୍ରକ ସହରଠାରୁ ମାତ୍ର ନଅ କିଲୋମିଟର ଦୂର ଗଞ୍ଜାମାଳ ଗ୍ରାମ (ଆନନ୍ଦ ବଜାର)ରେ ୧୯୪୬ ମସିହାରେ ତାଙ୍କର ଜନ୍ମ । ତାଙ୍କ ମାତାଙ୍କ ନାମ ସାରମଣୀ ଦେବୀ ଏବଂ ପିତାଙ୍କ ନାମ ଶମ୍ଭୁନାଥ ପଣ୍ଡା ।

ସଂସ୍କୃତରେ କଥିତ ଅଛି—

"ଧ୍ୱନେ ଯଶସି, ତୋୟେ ଚ ବିଶୁଦ୍ଧାନାଂ ବିଶୁଦ୍ଧାନା ବିଶୁଦ୍ଧତା ।"

ଅର୍ଥାତ୍ ପୁତ୍ରର ଯଶ ଏବଂ ଜଳର ବିଶୁଦ୍ଧତା ପ୍ରତ୍ୟେକ ନିଜ ନିଜର ଉତ୍ପତ୍ତି ସ୍ଥଳରୁ ହିଁ ଜଣା ପଡନ୍ତି । ବିଦ୍ୱାନ ଏବଂ ସୁଗୁଣ ପିତାର ପୁତ୍ର ଯେପରି କ୍ୱଚିତ୍ ବିପଥଗାମୀ ହୋଇଥାନ୍ତି ଯେହିପରି ଭଲ ଝରର ପାଣି ସର୍ବଦା ପାନ କରିବା ପାଇଁ ତୃପ୍ତିକର ହୋଇଥାଏ । ଏହି ସତ୍ୟର ବ୍ୟତିକ୍ରମ ଶ୍ରୀଯୁକ୍ତ ପଣ୍ଡା ଆଦୌ ନୁହଁନ୍ତି । ତାଙ୍କର ସ୍ୱର୍ଗତଃ ପିତା ଶମ୍ଭୁନାଥ ପଣ୍ଡା ତତ୍କାଳୀନ ଗ୍ରାମ୍ୟ ନାଟ୍ୟକଳାର ଜଣେ ଜଣାଶୁଣା ଓସ୍ତାଦ ଭାବରେ ଖ୍ୟାତି ଅର୍ଜନ କରିପାରିଥିଲେ । ଲୀଳା ଓ

ସୁଆଙ୍ଗ ଇତ୍ୟାଦିରେ ବନ, କୃଷ୍ଣ ଏବଂ ଅନ୍ୟାନ୍ୟ କରୁଣ ରସଶ୍ରିତ ନାୟକ ଭୂମିକାରେ ଅଭିନୟ କରି ସେ ଭଦ୍ରକ ଅଞ୍ଚଳରେ ସମସ୍ତଙ୍କର ପ୍ରିୟ ପାତ୍ର ହୋଇ ପାରିଥିଲେ । ପୂର୍ବରୁ ସ୍ୱର୍ଗୀୟ ଶମ୍ଭୁନାଥ ପଣ୍ଡାଙ୍କ ପିତା-ପ୍ରପିତା ଇତ୍ୟାଦି ସାହିତ୍ୟ, ସଙ୍ଗୀତ, ବ୍ୟାକରଣ ଓ ନୃତ୍ୟଶାସ୍ତ୍ରରେ ପାରଦର୍ଶିତା ହାସଲ କରିଥିଲେ । ଏଣୁ ନାଟ୍ୟାଚାର୍ଯ୍ୟଙ୍କର କଳାତ୍ମକ ସ୍ଫୁରଣ ବଂଶାନୁକ୍ରମିକ ।

ଓଡ଼ିଶାର ନାଟକ ପ୍ରତି ଦୃଷ୍ଟିପାତ କଲାବେଳେ ଦେଖିବାକୁ ମିଳେ ଯେ ଲୀଳା, ସୁଆଙ୍ଗ, ଗୀତିନାଟ୍ୟ, ଗୀତାଭିନୟ, ନୃତ୍ୟନାଟ୍ୟ, ଓ ରାସ ପ୍ରଭୃତି ନାନା ରୂପରେ ଯାହା ଓଡ଼ିଶାରେ ପ୍ରଚଳିତ ଥିଲା । ରାସ ଭକ୍ତିପିପାସୁ ବ୍ୟକ୍ତିମାନଙ୍କର ଅତ୍ୟନ୍ତ ପ୍ରିୟ ଥିଲା । ଲୋକନାଟ୍ୟ ବନାମ ରାମଲୀଳା, ଦଣ୍ଡନାଚ, ପାଲାନାଚ, ପ୍ରଭୃତି ମୁକ୍ତ ରଙ୍ଗମଞ୍ଚରେ ପୌରାଣିକ ଆଖ୍ୟାନ ଉପରେ ଆଧାରିତ ହୋଇ ଅଭିନୀତ ହେଉଥିଲା । ଏଥିରେ ଅଭିନୟ ପ୍ରତି ସେତେଟା ଦୃଷ୍ଟି ଦିଆ ନ ଯାଇ କେବଳ ସଙ୍ଗୀତ ପ୍ରତି ବିଶେଷ ଦୃଷ୍ଟି ଦିଆ ଯାଉଥିଲା । ଏହି ଲୋକନାଟ୍ୟର ପରିମାର୍ଜିତ ସଂସ୍କରଣ ହେଲା "ରାସଲୀଳା" ଏହାର ବିଷୟବସ୍ତୁ ରାଧା କୃଷ୍ଣଙ୍କ ପ୍ରେମଲୀଳା ଉପରେ ଆଧାରିତ । ରାସକ୍ରୀଡ଼ାର ବ୍ୟାଖ୍ୟା କରିବାକୁ ଯାଇ ସଂସ୍କୃତରେ ଲେଖାଅଛି —

"ନୃତ୍ୟଗୀତ ଚୁମ୍ବନାଲିଙ୍ଗନାଦୀନାଂ ରସାନାଂ
ସମୂହୋ ରାସମୁନ୍ନାୟୀ ଯା କ୍ରୀଡ଼ା ସା ରାସକ୍ରୀଡ଼ା"

ଅର୍ଥାତ୍ ରସର ପରାକାଷ୍ଠା ଯେଉଁଥିରେ ସମ୍ପୂର୍ଣ୍ଣ ରୂପେ ପ୍ରତିପାଦିତ ହୋଇଥାଏ, ତାହାକୁ ରାସକ୍ରୀଡ଼ା କୁହନ୍ତି ।

ଓଡ଼ିଶାର ଯାତ୍ରା କବିମାନଙ୍କ ଭିତରେ ଯେଉଁମାନେ ପ୍ରସିଦ୍ଧି ଲାଭ କରି ପାରିଥିଲେ ସେମାନଙ୍କ ଭିତରେ ତ୍ରିଲୋଚନ ରାୟଗୁରୁ, ମାଗୁଣି ସ୍ୱାଇଁ, ଧ୍ରୁବ ବାରିକ, ଉଦୟନାଥ ରାଉତ, ମୁନ୍‌ସି ହକମ୍, ସେଖ ଅବଦୁଲ୍ଲା, ଦୋଳଗୋବିନ୍ଦ ମଙ୍ଗରାଜ, ଗୋପାଳ ଦାସ, ରଘୁନାଥ ପଟ୍ଟନାୟକ, ବୈଷ୍ଣବ ପାଣି, ଜଗନ୍ନାଥ ପାଣି, ବାଳକୃଷ୍ଣ ମହାନ୍ତି, କବି ମଞ୍ଜୁଳ କୃଷ୍ଣପ୍ରସାଦ ବସୁ, ଘନଶ୍ୟାମ ଦାଶ, ଜଗବନ୍ଧୁ ସିଂହ ଓ ଭିକାରି ନାଏକଙ୍କ ନାମ ଉଲ୍ଲେଖଯୋଗ୍ୟ ।

ଯାତ୍ରାର ରଙ୍ଗମଞ୍ଚ ଖୋଲା । ବିପୁଳ ଜନତା ଏଠାରୁ ରୁଚି ଉପଭୋଗ କରିପାରନ୍ତି । ନାଟକରେ ଏହା ସମ୍ଭବପର ହୋଇ ପାରେ ନାହିଁ । ଯାତ୍ରା ଭଳି ବିପୁଳ ଜନତାକୁ ଆକର୍ଷଣ କରିବା ପାଇଁ ଅନ୍ୟ କୌଣସି ଅନୁଷ୍ଠାନ ସମର୍ଥ ହୋଇ ପାରେ ନାହିଁ ।

ଯାତ୍ରା ପରି ଉତ୍ତର ଓଡ଼ିଶାର ବାଲେଶ୍ୱର ଜିଲ୍ଲାରେ ମୋଗଲ ତାମସା ଥିଲା ଏକ ସର୍ବଜନାଦୃତ ଲୋକନାଟ୍ୟ । ବିଶେଷତଃ ଭଦ୍ରକ ଅଞ୍ଚଳରେ ଏହା ବହୁଳ ଭାବରେ ଅଭିନୀତ ହୋଇଥାଏ । ଏହି ତାମସାର ଆଦି ରଚୟିତା ହେଉଛନ୍ତି କବି ବଂଶୀବଲ୍ଲଭ ଗୋସ୍ୱାମୀ ।

ଶ୍ରୀଯୁକ୍ତ ପଣ୍ଡା ଧାମନଗର ଭର୍ଣ୍ଣି କୁମାର ସ୍କୁଲରୁ ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇ ଶିକ୍ଷା ବିଭାଗର ବୃତ୍ତି ସହ ଭଦ୍ରକ ଉଚ୍ଚଇଂରାଜୀ ବିଦ୍ୟାଳୟରେ ଅଧ୍ୟୟନ କରୁଥିଲାବେଳେ 'ମୋଗଲ ତାମସା' ଦେଖି ସେ ବିଶେଷଭାବରେ ଅଭିନୟ ପ୍ରତି ଆକୃଷ୍ଟ ହୋଇଥିଲେ । ଗ୍ରାମ ଘର ପୁଅ ଗ୍ରାମ ଭଳି ୰ ଶମ୍ଭୁନାଥ ପଣ୍ଡାଙ୍କ ସୁଯୋଗ ଭାବରେ ସେ ଭଦ୍ରକର ବିଶିଷ୍ଟ ନିର୍ଦ୍ଦେଶକ ସୁରେନ୍ଦ୍ର ନାଥ ବାନାର୍ଜୀଙ୍କ ସାନ୍ନିଧ୍ୟ ଲାଭ କଲାପରେ ପାଠ ପଢ଼ାରେ ଡୋର ବାନ୍ଧି କଳା ସାଧନାରେ ମନୋନିବେଶ କଲେ । ସ୍ୱର୍ଗୀୟ ବାନାର୍ଜୀଙ୍କ ନିର୍ଦ୍ଦେଶିତ "ମହିଷାସୁର ବଧ" ନାଟକରେ ପ୍ରଥମେ ସେ ଦେବରାଜ ଇନ୍ଦ୍ର ଭୂମିକାରେ ଅଭିନୟ କରିବା ପାଇଁ ସୁଯୋଗ ଲାଭ କରି ପ୍ରଶଂସିତ ହୋଇଥିଲେ ।

ଅଗଣିତ ଦର୍ଶକଙ୍କର ଅକୁଣ୍ଠ ପ୍ରଶଂସା ପାଇ ସାରିବା ପରେ ଶ୍ରୀଯୁକ୍ତ ପଣ୍ଡା ଯାତ୍ରାଭିନୟ ପ୍ରତି ମନ ବଳାଇଲେ । ୧୯୩୫ ମସିହାରେ ଭଦ୍ରକ ନିକଟସ୍ଥ 'ଅସୁରାଲି'ର ତତ୍କାଳୀନ ଜମିଦାରଙ୍କ ପୃଷ୍ଠପୋଷକତାରେ ପ୍ରତିଷ୍ଠିତ "ଦାମୋଦର ଅପେରା"ରେ ଯୌବନଦୃପ୍ତ ଆଶା, ବଳିଷ୍ଠ ଶୈଳ୍ପିକ ଆତ୍ମପ୍ରତ୍ୟୟ ନେଇ ଯୁବକ ରଘୁନାଥ ପ୍ରଥମେ ଯାତ୍ରା ପାର୍ଟିରେ ଯୋଗ ଦେଲେ ।

ଶ୍ରୀଯୁକ୍ତ ପଣ୍ଡା ଯାତ୍ରାପାର୍ଟିରେ ଯୋଗ ଦେବା ପୂର୍ବରୁ ଓଡ଼ିଶାର ଯାତ୍ରା ସମ୍ବନ୍ଧରେ ସମାଲୋଚକଙ୍କର ମତ ଥିଲା—"ପ୍ରକୃତରେ ନାଚୁଆ ପିଲାମାନଙ୍କ କାର୍ଯ୍ୟ ଅତ୍ୟନ୍ତ କଠିନ । ଶୁଦ୍ଧ ରାଗିଣୀ, ତାଳ ଓ ନୃତ୍ୟ ନହେଲେ ଏଥିରେ ସୁଖ ଜାତ ହୋଇପାରେ ନାହିଁ । ଯାତ୍ରାରେ ମଧ୍ୟ

ସେହ୍ମପରି ସଙ୍ଗୀତର ପ୍ରୟୋଜନ । ତେବେ ଯାତ୍ରାବାଲମାନେ ଗୋଟିଏ ବିଷୟକୁ ଯେଉଁ ତଦୁପଯୁକ୍ତ ସଙ୍ଗୀତ ମଧ୍ୟରେ ଖଞ୍ଜି ଥିବାରୁ ସଙ୍ଗୀତ ତେତେ ବିଶୁଦ୍ଧ ନହେଲେ ସୁଦ୍ଧା ତଦ୍ଦ୍ୱାରେ ମନୋରଞ୍ଜନ ହୁଅଇ । ଏହି ହେତୁରୁ ଯାତ୍ରାର ଆଦର ଅଧିକ ଓ ତାହା ସମସ୍ତଙ୍କ ବୋଧଗମ୍ୟ । ମାତ୍ର ଓଡ଼ିଶାରେ ଭଲ ଯାତ୍ରା ନାହିଁ ବୋଲି କେତେକ ମତ ଦେଉଛନ୍ତି × × ଅତଏବ ଆମ୍ଭେମାନେ ଏତକ ଆଶା କରୁ ଯାତ୍ରାଟି ନିତାନ୍ତ ବଙ୍ଗଳା ନ ହେଉ ।” ✻

ପୁନଶ୍ଚ 'ଉତ୍କଳ ଦୀପିକା'ର ସମ୍ପାଦକ ଲେଖିଲେ ଯେ, "ସମ୍ପ୍ରତି ଓଡ଼ିଶାରେ ଯାହା ଯାତ୍ରା ନାମରେ ଖ୍ୟାତ ହୋଇଅଛି ଓ ଯାହାକୁ କଦାପି ନ ଦେଖି ଭଦ୍ରଲୋକମାନେ ଦେଖିବା ପାଇଁ ବାଧ୍ୟ ହୁଅନ୍ତି ତାହା ଅତ୍ୟନ୍ତ ଘୃଣିତ ଓ ତଦ୍ଦ୍ୱାରେ ଓଡ଼ିଶାର ରୁଚିର ନିତାନ୍ତ କୁତ୍ସିତ ପରିଚୟ ପ୍ରାପ୍ତ ହୁଅଇ । ବଙ୍ଗଭାଷାରେ ହେଉ ପଛକେ ବାଲେଶ୍ୱରର ଓଡ଼ିୟାମାନେ ଯେ ଏ ବ୍ୟବସାୟରେ ପ୍ରବୃତ୍ତ ହୋଇଅଛନ୍ତି ଏହାକୁ ଆମ୍ଭେମାନେ ଏକ ଶୁଭଲକ୍ଷଣ ବୋଲି ଅତ୍ୟନ୍ତ ଆଦର କରୁଅଛୁଁ । ଆମ୍ଭେମାନେ ଭରସା କରୁଁ ଯେ ଓଡ଼ିଶାବାସୀମାନେ ଏହାକୁ ପ୍ରଚୁର ପରିମାଣରେ ଉତ୍ସାହିତ କରିବେ ଏବଂ ସ୍ୱଦେଶାନୁରାଗୀ ମହାଶୟମାନେ ଏହାକୁ ସତ୍ ପରାମର୍ଶ ଦେଇ ଓଡ଼ିଆ ଯାତ୍ରା କରାଇବାକୁ ପ୍ରବୃତ୍ତ କରାଇବେ । ଶିକ୍ଷିତ ଓ ହିତୈଷୀ ଲୋକଙ୍କ ସାହାଯ୍ୟ ବିନା ଏସବୁ ବ୍ୟାପାର ସାଧନ ହୋଇ ନପାରେ ।”

ପ୍ରକୃତରେ କିଛି ସମୟ ପରେ ସମ୍ପାଦକଙ୍କ ଆଶା ପୂର୍ଣ୍ଣ ହେଲା । ଓଡ଼ିଆ ଯାତ୍ରା ସାହିତ୍ୟର ମୋଡ଼ ବଦଳିଗଲା । ପ୍ରଚଣ୍ଡ ପ୍ରତିଭା ଯେଉଁ ୰ ଜଗନ୍ନାଥ ପାଣିଙ୍କର ଯାତ୍ରା ଆକାଶରେ ଅଭ୍ୟୁଦୟ ଘଟିଲା । ତାଙ୍କ କାନ୍ତ ଲଳିତ ନାଟକାବଳୀ ନିଜସ୍ୱ ପ୍ରଭାବରେ ଓଡ଼ିଶା ଓ ଅନ୍ୟାନ୍ୟ ଉପାନ୍ତ ଅଞ୍ଚଳରେ ଆଦର ଲାଭ କଲେ । ୰ ଜଗନ୍ନାଥ ପାଣିଙ୍କ ପରେ ପରେ ୰ ବୈଷ୍ଣବ ପାଣି, କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ ପ୍ରଭୃତି ଓଡ଼ିଶାର ଯାତ୍ରାକୁ ସମାଲୋଚକମାନଙ୍କ ସମାଲୋଚନାର ଶରବ୍ୟରୁ ରକ୍ଷା କରି ପ୍ରଶଂସା ଭାଜନ କରାଇ ପାରିଲେ ।

---

✻ ଓଡ଼ିଆ ଯାତ୍ରା—ଉତ୍କଳଦୀପିକା (ତା ୨୮-୧୦-୧୯୨୭) ଉତ୍କଳଦୀପିକା ତା' ୨୦-୧୧-୧୮୭୫ ।

ଏହି ସୁବର୍ଣ୍ଣ ସୁଯୋଗରେ ସୁଯୋଗକୁ ଶ୍ରୀଯୁକ୍ତ ପଣ୍ଡା ହାତଛଡ଼ା କଲେ ନାହିଁ । ସେ ଶିକ୍ଷା ନବସ୍ ଭବନରେ କବିମଞ୍ଚ୍ ର କୃତ୍ତିପ୍ରଯାତ ବସ୍ତୁ ଓ କବିଚନ୍ଦ୍ର ଡକ୍ଟର କାଳୀଚରଣ ପଟ୍ଟନାୟକଙ୍କ କର୍ମଶାଳାରେ ଯୋଗ ଦେଲେ ।

ଚିତ୍ରକଳା ବର୍ଣ୍ଣ (ରଙ୍ଗ) ଓ ଗାର (Line) ମାଧ୍ୟମରେ, ସାହିତ୍ୟ ସାଧାରଣତଃ ଶବ୍ଦ ସମ୍ମିଳନରେ, କବିତା ଉତ୍କଣ୍ଠା, ଉଦ୍ଦାମତା (Emotions) ଓ ଛନ୍ଦ ବୈଚିତ୍ର୍ୟ ସହଯୋଗରେ ଏବଂ ଗଳ୍ପ ଉପନ୍ୟାସ ବର୍ଣ୍ଣନା ସୂତ୍ରରେ ଆତ୍ମପ୍ରକାଶ କରିଥାନ୍ତି । ନାଟକର ଧର୍ମ କେବଳ କାହାଣୀ ମାଧ୍ୟମରେ ନୁହେଁ ଗୋଟିଏ ସଂଘ (ନଟ-ନଟୀ) ସାହାଯ୍ୟରେ ପ୍ରେକ୍ଷକଙ୍କୁ କାହାଣୀର ମର୍ମ ଅନୁଭବ ବା ଗ୍ରହଣ କରାଇବା ଅଥବା ବୁଝାଇ ଦେବା ହିଁ ନାଟ୍ୟ ଧର୍ମ । ※

ଯେଉଁ ନଟ-ନଟୀ ଏହି ନାଟକର କାହାଣୀକୁ ଦର୍ଶକମାନଙ୍କୁ ବୁଝାଇବା ପାଇଁ ସକ୍ଷମ ହୋଇପାରନ୍ତି ସେମାନେ ହିଁ ଉପଯୁକ୍ତ କଳାକାର ନ ହୋଇଥିବେ ତେବେ ନାଟକର ଭାଷା ବା ସଂଳାପ କିମ୍ବା ବିଷୟବସ୍ତୁ ଯେତେ ଭାବଗମ୍ଭୀର ହେଉ ଥାଉ ନା କାହିଁକି ଦର୍ଶକଙ୍କ ମନରେ ଆଦୌ ଛାପ ପକାଇ ପାରିବ ନାହିଁ । ତେଣୁ ନାଟକରେ ଅଭିନୟ କରିବା ଏକ କଷ୍ଟକର ସାଧନା । ଯେଉଁ କଳାକାର ନାଟ୍ୟ-ଧର୍ମକୁ ମର୍ମେ ମର୍ମେ ଅନୁଭବ କରି ନିଜର ଅଭିନୟଦ୍ୱାରା ପ୍ରଦର୍ଶନ କରାଇ ପାରନ୍ତି ସେ ହିଁ କେବଳ ସଫଳ ଅଭିନେତା ବା ଅଭିନେତ୍ରୀ ରୂପେ ସ୍ୱୀକୃତି ଲାଭ କରନ୍ତି । ସେଥିପାଇଁ Theory of Drama ନାମକ ଗ୍ରନ୍ଥରେ ଲିଖିତ ଅଛି ଯେ "A Drama is never relay a story told to an audiance, it is a story interpreted before an audiance by a body of actors."

ଶ୍ରୀଯୁକ୍ତ ପଣ୍ଡା ରଙ୍ଗମଞ୍ଚରେ ଆପଣାକୁ ଯେଉଁ ଭୂମିକାରେ ଯେତେବେଳେ ଅବତୀର୍ଣ୍ଣ କରାଉଥିଲେ ସେତେବେଳେ ସେ ନିଜକୁ ଶମ୍ଭୁନାଥ ପଣ୍ଡାଙ୍କ ପୁତ୍ର ବୋଲି ବିସ୍ମରଣ କରି ଅଭିନୟ କରୁଥିବା ଭୂମିକାରେ ହଜାଇ ଦେଉଥିଲେ । ତେଣୁ ତାଙ୍କର ଅଭିନୟ ଜୀବନ୍ତ, ଏବଂ

※ ମଞ୍ଚଧାରା—କବିଚନ୍ଦ୍ର କାଳୀଚରଣ ପୃଷ୍ଠା ୧୦୫ ।

ସରସ ହେଉଥିଲା । ଯାତ୍ରା ପାର୍ଟିମାନଙ୍କରେ ତାଙ୍କର ଆଦର ଯଥେଷ୍ଟ ବଢ଼ିବାକୁ ଲାଗିଲା ।

ମଣିଷର ପ୍ରବୃତ୍ତି ହେଉଛି ଉନ୍ନତି କରିବା । ଜଣେ ଦକ୍ଷ କଳାକାର ଭାବରେ ନିଜକୁ ପ୍ରତିଷ୍ଠିତ କରି ସାରିବା ପରେ ଶ୍ରୀଯୁକ୍ତ ପଣ୍ଡା ସନ୍ତୁଷ୍ଟ ହୋଇ ପାରିଲେ ନାହିଁ । ସେ ନାଟକମାନଙ୍କର ନିର୍ଦ୍ଦେଶନା ଦେବା ଆରମ୍ଭ କଲେ ଏବଂ ତହିଁରେ ମଧ୍ୟ ସାଫଲ୍ୟ ଅର୍ଜି ପାରିଲେ । ଓଡ଼ିଶୀ ଯାତ୍ରା ମଞ୍ଚରେ ସେ ଏକ ବୈପ୍ଳବିକ ପରିବର୍ତ୍ତନ ଆଣି ପ୍ରଥମେ ୧୯୩୭ ମସିହାରେ ନାରୀ ଅଭିନେତ୍ରୀମାନଙ୍କୁ ଅଭିନୟ କରିବା ପାଇଁ ସୁଯୋଗ ଦେଇଥିଲେ ।

" ବୈଷ୍ଣବ ପାଣିଙ୍କ ପୂର୍ବରୁ ଯେଉଁ କେତେଜଣ ଯାତ୍ରା ସାହିତ୍ୟ ସୃଷ୍ଟି କରୁଥିଲେ, ସେମାନେ ତାଙ୍କ ପରି ଜନପ୍ରିୟ ଲୋକପ୍ରିୟତା ହାସଲ କରିପାରି ନଥିଲେ । ତାହା ଜଣାଇବାକୁ ଯାଇ "ଗୋବିନ୍ଦଚନ୍ଦ୍ର ଗୀତାଭିନୟରେ" ନଟୀ ମୁହଁରେ ସେ କୁହାଇଛନ୍ତି— "ନଟଶେଖର । ଭାବିଲ ତୁମ ପୂର୍ବରୁ ଭଗାରି, ବନ୍ଧୁ, ମାଗୁଣି, ଦୁଷ୍କର ଓ ପଦ୍ମନାଭ ପ୍ରଭୃତି କେତେ ଗୀତାଭିନୟ ଲେଖକ ନଥିଲେ ? ନୂଆ ଲେଖକମାନେ ସେମାନଙ୍କୁ ଅନୁସରଣ ନ କଲେ କାହିଁକି ? ତୁମେ କହିପାର ସେ ପ୍ରକାରର ଗୀତ ଆଉ ଆଜିକାଲି ଆଦର ହେଉନାହିଁ । ଅଚ୍ଛା ଆଜିକାଲି ତ' ବିଖ୍ୟାତ କବି ନାମରେ ଗୋପାଳଦାସ ପରିଚିତ, ତାଙ୍କ ଲେଖାକୁ ଅନୁକରଣ ନକଲେ କାହିଁକି ? ନା, ସେମାନଙ୍କଠାରୁ ତୁମେ ବଡ଼ ଏହା କଣ ତାର ଗୂଢ଼ ପ୍ରମାଣ ?" ଏହା ବୈଷ୍ଣବ ପାଣିଙ୍କର ଆତ୍ମ ବଡ଼ିମାର ପ୍ରଖ୍ୟାପନ ନୁହେଁ । ଯେହେତୁ ସେ ଥିଲେ ନିଜର ଶକ୍ତି ଓ ସାମର୍ଥ୍ୟ ବିଷୟରେ ସଚେତନ, ତେଣୁ ନଟୀ ମୁହଁରେ ଏପରି ବଚନିକା ଦିଆଇ ନିର୍ଭୟ ଚିତ୍ତତାର ଦେଇଥିଲେ ସ୍ପଷ୍ଟ ପରିଚୟ । *

ଏକଥା ଏଠାରେ ଉଲ୍ଲେଖ କରିବାର କାରଣ ହେଉଛି ଅଭିନେତା ଏବଂ ନିର୍ଦ୍ଦେଶକ ଭାବରେ ପ୍ରତିଷ୍ଠା ଅର୍ଜନ କରିସାରି ଶ୍ରୀଯୁକ୍ତ ପଣ୍ଡା ସନ୍ତୁଷ୍ଟ ହୋଇ ପାରିଲେ ନାହିଁ । ସେ ଓଡ଼ିଆ ଯାତ୍ରା ପାଇଁ ସର୍ବାନ୍ତଃକରଣରେ ଚିନ୍ତା କରୁଥିଲେ । ତହିଁରେ ନବ ଦିଗନ୍ତ ସୃଷ୍ଟି କରିବା ପାଇଁ ଆପେ

---

* ଯୁଗେ ଯୁଗେ ନାଟ୍ୟ ସାହିତ୍ୟ ପୃଷ୍ଠା—୧୩୩ ।

ସେ ନାଟକ ରଚନା କରିବା ପାଇଁ ମନ ବଳାଇଲେ । ଦୀର୍ଘ ପଚିଶ ବର୍ଷ ଧରି ଅବିରାମ ଲେଖଣୀ ଚଳାଇ ସେ ସୃଷ୍ଟି କରିଛନ୍ତି ପ୍ରାୟ ଏକଶତ ନାଟକ ।

ସମସ୍ତ ସ୍ରୋତରେ ଭାସି ଭାସି ଯାହାର ସର୍ବାଙ୍ଗୀନ ସାଫଲ୍ୟ ପାଇଁ ନିଜକୁ ପ୍ରତି ମୁହୂର୍ତ୍ତରେ ଉତ୍ସର୍ଗ କରିବା ପାଇଁ ସେ ପ୍ରସ୍ତୁତ ଅଛନ୍ତି । ବିଶ୍ରାମ-ବିହୀନ କୁମ୍ଭାରର କର୍ମଶାଳାରେ ଧୂଳିମାଟିର ଗ୍ରାମୀଣ ମାନବମାନଙ୍କୁ ଆଶା, ଉତ୍ସାହ, ଆଶୀର୍ବାଦ ଦେଇ ଅନେକ କୋଣାର୍କର ଅନନ୍ୟ ବିଶୁ-ମହାରଣା—ଧର୍ମପଦମାନଙ୍କୁ ଜାତି ଗଠନ ପାଇଁ ସୃଷ୍ଟି କରିଛନ୍ତି । ସମ୍ପ୍ରତି ନାଟ୍ୟାଚାର୍ଯ୍ୟ ପଣ୍ଡାଙ୍କ ଲେଖଣୀ ଧାରଣର ପଚିଶ ପୂର୍ତ୍ତି ଉପଲକ୍ଷେ ସଦ୍ୟ ପ୍ରକାଶିତ "ଚେଲେଞ୍ଜ" ଓଡ଼ିଆ ନାଟକର ଶିଳ୍ପୀ ଚେତନାରେ ନବ ଦିଗନ୍ତ ସୃଷ୍ଟି କରିଛି । ଏ ଯାବତ୍ ସେ ପ୍ରାୟ ଏକ ଶହ ନାଟକ, ପ୍ରହସନ, ତାମସା, ସହସ୍ରାଧିକ ଲୋକସଙ୍ଗୀତ, ଦେଶବନ୍ଦନା ଓ ଭକ୍ତିଗୀତ ରଚନା କରି ଓଡ଼ିଶାର ସାରସ୍ୱତ ଜଗତକୁ ମଣିମାଣିକ୍ୟରେ ବିଭୂଷିତ କରିଛନ୍ତି । ତନ୍ମଧ୍ୟରୁ ପ୍ରକାଶ ପାଇଥିବା ଅଶୀ ଖଣ୍ଡ ନାଟକ ମଧ୍ୟରୁ ବିଶେଷ ଲୋକ-ପ୍ରିୟତା ଅର୍ଜନ କରିଥିବା ଶକୁନ୍ତଳା, ରାମରାଜ୍ୟ, ଦସ୍ୟୁରତ୍ନାକର, ଛତ୍ରପତି ଶିବାଜୀ, ଶହୀଦ୍ ପୃଥିରାଜ, ପଞ୍ଜାବ କେଶରୀ, ସେରାଜ୍ ନବାବ, ଅନାରକଲୀ, ବିଦଗ୍ଧ କାହ୍ନୁ, ବିଚିତ୍ର ଦୁନିଆଁ, ଦୁଃଖ ନଈର ଘାରେ, ଶଙ୍ଖା ସିନ୍ଦୂର ଶାଢ଼ୀ, ନଷ୍ଟୀ ମାଳମୀ, ଗବ୍ବର ସିଂହ, ମରଣ ଆଖିରେ ଲୁହ, ଗାଁ ଗହଳୀର ସରପଞ୍ଚ, ରାମ ଲକ୍ଷ୍ମଣ ହୋ, ଚେଲେଞ୍ଜ, କାଳିଆ ଆଖିରେ ଲୁହ, ଏ ଦୁନିଆଁ ରଙ୍ଗମଞ୍ଚରେ, ବିଦ୍ରୋହୀ ଭଗବାନ, ଭଗବାନଙ୍କ ଚରମପତ୍ର, ରାଧା, ଅସ୍ତରାଗ, ବମ୍‌ରହ୍ମମ, ମାଣିକମାଳା, ରଘୁ ଡକାଏତ୍, ଦାୟୀ କିଏ !? ଇତ୍ୟାଦି ମୁକ୍ତ ରଙ୍ଗମଞ୍ଚରେ ଦର୍ଶକ-ମାନଙ୍କୁ ରହସ୍ୟ-ରୋମାଞ୍ଚ-ହାସ କାନ୍ଦର ମାଧ୍ୟମରେ ମାର୍ଜିତ ରୁଚି-ବୋଧର ନୈତିକ ଚେତନାକୁ ସ୍ପର୍ଶିତ କରିଛି । ବଳିଷ୍ଠ ସଂଳାପ ଓ ଉନ୍ନତ ନାଟକୀୟ ଉତ୍କଣ୍ଠା ନାଟ୍ୟାଚାର୍ଯ୍ୟ ପଣ୍ଡାଙ୍କର ରଚନାକୁ ମର୍ଯ୍ୟାଦା-ବନ୍ତ କରି ତୋଳି ପାରିଛି । ନିଜସ୍ୱ ସୃଷ୍ଟି ସମ୍ଭାର ପାଇଁ ଓଡ଼ିଆ ସାହିତ୍ୟର ଇତିହାସରେ ସେ ଅବିସ୍ମରଣୀୟ ହୋଇ ପାରିବେ ।

ସୁଦକ୍ଷ ନର୍ଦ୍ଦେଶକ, ବାସ୍ତବବାଦୀ ଶିଳ୍ପୀ ଭାବରେ ନାଟ୍ୟାଚାର୍ଯ୍ୟ ପଣ୍ଡା ଅଦ୍ୱିତୀୟ ଏବଂ ଏଯାବତ୍ ପ୍ରତିମାନ । ତାଙ୍କଦ୍ୱାରା ନର୍ଦ୍ଦେଶିତ କଳାକାରଙ୍କ ଅଭିନୟର ସ୍ୱାତନ୍ତ୍ର୍ୟ ବିଶେଷ ଅନୁଭୂତ ହୁଏ । ନିଖୁଣ ଅଭିନୟ, ହୃଦୟସ୍ପର୍ଶୀ ସଂଳାପ, ରୁଚିସମ୍ପନ୍ନ ପରିବେଷଣ ଶୈଳୀର ତୁଳନା ଅନ୍ୟତ୍ର ଦେଖାଯାଏ ନାହିଁ । ତାଙ୍କ ଅଭିନୟର ଇନ୍ଦ୍ରଜାଲରେ ସାଧାରଣ ଦର୍ଶକ ବିମୋହିତ ହୋଇ ବସି ରହେ । ବିଦଗ୍ଧ ଦର୍ଶକର ମନପ୍ରାଣ ବିବେକରେ ଉଦ୍‌ବେଗ, ଉତ୍ତେଜନା, ଉଦ୍‌ବେଳନ ସୃଷ୍ଟି କରି ପାରିବାରେ ତାଙ୍କର ଅଭିନୟ ସର୍ବତ୍ର ପ୍ରଶଂସିତ । ଅତ୍ୟାଧୁନିକ ସିନେମାଟୋଗ୍ରାଫି, ବିଦ୍ୟୁତ୍ ଆଲୋକର ଇନ୍ଦ୍ରଜାଲ, ଭିଡ଼ିଓ, ଟେଲିଭିଜନ, ରେଡ଼ିଓର ବହୁଳ ପ୍ରଚାର ଓ ସର୍ବୋପରି ଅର୍ଥନୈତିକ ଦ୍ୱିତୀୟ, ତୃତୀୟ ରଙ୍ଗମଞ୍ଚ ସଂଲଗ୍ନ ବ୍ୟବସାୟୀ ମଞ୍ଚ ସହିତ ପ୍ରତିଦ୍ୱନ୍ଦ୍ୱିତା କରି ରଘୁନାଥ ପଣ୍ଡାଙ୍କ ଯାତ୍ରା ପାର୍ଟି କିପରି ବଞ୍ଚିରହି ପାରିଛି—ତାହା ସ୍ୱତଃ ମନରେ ଏକ ପ୍ରଶ୍ନବାଚୀ ସୃଷ୍ଟି କରିଥାଏ । ଏସବୁର ମୂଳରେ ଶ୍ରୀଯୁକ୍ତ ପଣ୍ଡାଙ୍କ ମୌଳିକ ଦୃଷ୍ଟିଭଙ୍ଗୀ ଏବଂ କଳାତ୍ମକ ଜୀବନ ଦର୍ଶନ ନିହିତ ରହିଛି ବୋଲି ବିଚାର କରାଯାଇପାରେ । ଓଡ଼ିଶା ବାହାରେ ମୁଖ୍ୟତଃ କଲିକତା ମହାନଗରୀ ଏବଂ ଅନ୍ୟାନ୍ୟ ଅଣ ଓଡ଼ିଆ ଭାଷାଭାଷୀ ଅଞ୍ଚଳରେ ଓଡ଼ିଶାର ଲୋକସଂସ୍କୃତିର ପ୍ରଚାର ଏବଂ ପ୍ରସାର କରି ଓଡ଼ିଆ ଜାତିର ବଳିଷ୍ଠ ଭାବ ମୂର୍ତ୍ତି ପ୍ରତିଷ୍ଠା କରିବାରେ ଶ୍ରୀଯୁକ୍ତ ପଣ୍ଡା ହେଉଛନ୍ତି ଜଣେ ସାର୍ଥକ ସନ୍ଧାଣୀ । କଲିକତା ମହାନଗରୀ ଓ ପଶ୍ଚିମ ବଙ୍ଗଳାର ନାନାଦି ଅଞ୍ଚଳରେ ରଘୁନାଥ ପଣ୍ଡା ଯାତ୍ରା କହିଲେ ଓଡ଼ିଆ ଯାତ୍ରାକୁ ହିଁ ବୁଝିଥାନ୍ତି ।

୧୯୫୭ ମସିହାରେ ଭଦ୍ରକର ଏକ ମନୋଜ୍ଞ ଯାତ୍ରା ଉତ୍ସବରେ ତତ୍‌କାଳୀନ ବାଲେଶ୍ୱର ଜିଲ୍ଲାପାଳ ଶ୍ରୀଯୁକ୍ତ ପ୍ରାଣନାଥ ମହାନ୍ତି ଆଇ: ଏ: ଏସ୍: ଶ୍ରୀଯୁକ୍ତ ପଣ୍ଡାଙ୍କୁ 'ନାଟ୍ୟାଚାର୍ଯ୍ୟ' ଉପାଧି ପ୍ରଦାନ କରି ସମ୍ବର୍ଦ୍ଧନା ଜ୍ଞାପନ କରିଥିଲେ । କବିମଞ୍ଜୁଳ କୃଷ୍ଣ ପ୍ରସାଦ ବସୁ ନାଟ୍ୟରତ୍ନ ଉପାଧି ସହ ଆଶୀର୍ବାଦ କରିଥିଲେ ।

୧୯୭୫ ମସିହାରେ ଓଡ଼ିଶା ସାହିତ୍ୟ ଏକାଡ଼େମୀ ବିଶିଷ୍ଟ 'ନୋଟ୍ୟକାର' ରୂପେ ଉପାଯୁକ୍ତ ପ୍ରଦାନ କରି ନାଟ୍ୟାଚାର୍ଯ୍ୟଙ୍କ ସାହିତ୍ୟିକ

ପ୍ରତିଭା ପ୍ରତି ସମ୍ମାନ ପ୍ରଦର୍ଶନ କରିଛନ୍ତି । ୧୯୮୨ ମସିହାରେ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ବଶିଷ୍ଟ ନାଟ୍ୟକାର ଏବଂ ଲୋକନାଟ୍ୟ କ୍ଷେତ୍ରରେ ମହତ୍ତ୍ୱପୂର୍ଣ୍ଣ ଅବଦାନ ପାଇଁ ପୁରସ୍କୃତ କରିଛନ୍ତି । ଏତଦ୍‌ଭିନ୍ନ ଓଡ଼ିଶା ଓ ଓଡ଼ିଶା ବାହାରର ବିଭିନ୍ନ ସରକାରୀ, ବେସରକାରୀ ଶିକ୍ଷାନୁଷ୍ଠାନ, ସାଂସ୍କୃତିକ ପ୍ରତିଷ୍ଠାନ, ସୁନାମଧନ୍ୟ ବ୍ୟକ୍ତିବିଶେଷଙ୍କ ଠାରୁ ମାନପତ୍ର ଏବଂ ପୁରସ୍କାର ପାଇଛନ୍ତି । ୧୯୮୫ ମସିହାରେ ବାଲେଶ୍ୱର ସଙ୍ଗୀତ କଳା ମନ୍ଦିରରେ ଆୟୋଜିତ ଏକ ମନୋଜ୍ଞ ଶିଳ୍ପୀ ସମ୍ବର୍ଦ୍ଧନା ଉତ୍ସବରେ ତାଙ୍କୁ 'ଯାତ୍ରା ସମ୍ରାଟ' ଉପାଧି ସହ ସମ୍ବର୍ଦ୍ଧନା କରାଯାଇଥିଲା ।

ନାଟ୍ୟାଚାର୍ଯ୍ୟ ରଘୁନାଥ ପଣ୍ଡା ଦୀର୍ଘ ଅର୍ଦ୍ଧଶତାବ୍ଦୀର ବହୁଳପ୍ରସ କଳାକାର ଜୀବନ ମଧ୍ୟରେ ଓଡ଼ିଶାର ଲୋକସଂସ୍କୃତିକୁ ଅଧିକ ଋଦ୍ଧିମନ୍ତ କରିଛନ୍ତି ଉକ୍ତକୀପ୍ତ ଯାତ୍ରାର ମୌଳିକତ୍ୱକୁ ରକ୍ଷା କରି ପାରମ୍ପରିକ ଶୈଳୀରେ ଏହାର ପ୍ରଦର୍ଶନରେ ସେ ବିଶ୍ୱାସୀ । ଏହି ପରିପ୍ରେକ୍ଷୀରେ ବଂଶୀବଲ୍ଲଭ ଗୋସ୍ୱାମୀ, ବୈଷ୍ଣବ ପାଣି, ଜଗନ୍ନାଥ ପାଣି, ଗୋପାଳ ଦାସ, ମୋହନ ଗୋସ୍ୱାମୀ, ବାଳକୃଷ୍ଣ ମହାନ୍ତି ଏବଂ କବିମଞ୍ଜୁଳ କୃଷ୍ଣପ୍ରସାଦ ବସୁଙ୍କ ଉପଯୁକ୍ତ ଦାୟାଦ ରୂପେ ସେ ଗଣ ଦ୍ରବ୍ୟର ସିଂହାସନକୁ ଅଧିକାର କରିପାରିଛନ୍ତି । ଯଥାର୍ଥରେ ସେ ଓଡ଼ିଶା ବାସୀଙ୍କର ପ୍ରିୟ ଗଣନାଟ୍ୟକାର ସମ୍ପ୍ରତି ସେ ସୁପ୍ରତିଷ୍ଠିତ ଖାଳିଚନ୍ଦ ଅପେରାରେ ଅବସ୍ଥାପିତ । ଓଡ଼ିଶାର ସଂଖ୍ୟାଧିକ ଯାତ୍ରାନୁଷ୍ଠାନମାନଙ୍କରେ ତାଙ୍କ ନାଟକମାନ ଅଭିନୀତ ହେଉଛି । ଏବଂ ଶ୍ରୀଯୁକ୍ତ ପଣ୍ଡାଙ୍କ ନାଟ୍ୟଶାଳାରୁ ତାଲିମ, ପ୍ରାପ୍ତ କଳାକାରମାନେ ସମଗ୍ର ଯାତ୍ରାନୁଷ୍ଠାନରେ ଅଗ୍ରଗଣ୍ୟ ଅଟନ୍ତି । ତାଙ୍କର କାଳଜୟୀ ବହୁମୁଖୀ ପ୍ରତିଭା ଓଡ଼ିଆ ଜାତିର ମାନସ ପଟରେ ଅଳିଭା ଚିତ୍ର ହୋଇ ରହିବ । ଶ୍ରୀଜଗନ୍ନାଥ ତାଙ୍କୁ ଦୀର୍ଘାୟୁ କରନ୍ତୁ । *

●

* ଖାଳିଚନ୍ଦ ଅପେରାର ସୂଚନା ଓ ପ୍ରସାର ବିଭାଗ ଆବଶ୍ୟକୀୟ ତଥ୍ୟ ଯୋଗାଇ ଦେଇଥିବାରୁ ଲେଖକ ସେମାନଙ୍କଠାରେ କୃତଜ୍ଞ ।

## ସଙ୍ଗୀତପ୍ରଭାକର

# ମାର୍କଣ୍ଡେୟ ମହାପାତ୍ର

ଶ୍ରୀ କୃଷ୍ଣଚନ୍ଦ୍ର ମହାପାତ୍ର

"ସର୍ବେଷାଂ ଚୈବ କ୍ଷେତ୍ରାଣାଂ ରାଜା-ଶ୍ରୀ ପୁରୁଷୋତ୍ତମଃ
ସର୍ବେଷାଂ ଚୈବ ଦେବାନାଂ ରାଜା ଶ୍ରୀ ପୁରୁଷୋତ୍ତମଃ ।"

ଉତ୍କଳମଣି ପଣ୍ଡିତ ଗୋପବନ୍ଧୁଙ୍କ ଅମର ଲେଖନୀର ଅମୃତ-ବାଣୀ ଆଜ ମଧ୍ୟ ଶତାବ୍ଦୀର ଉଦ୍ଦାମ ନିନାଦରେ କହେ—

'ଭାରତ ସରସେ ଉତ୍କଳ କମଳ
ତା ମଧ୍ୟେ କେଶର ପୁଣ୍ୟ ନୀଳାଚଳ ।'

ମହୋଦଧି କୂଳ ସମୀପସ୍ଥ ଶ୍ରୀକ୍ଷେତ୍ରରେ ଧର୍ମପ୍ରାଣ ବ୍ୟକ୍ତି ଆସନ୍ତି ପଞ୍ଚତୀର୍ଥରେ ସ୍ନାନ କରି ପାତକ ତଥା ମାନସିକ ମୋଚନ କରିବା ନିମିତ୍ତ । ଏହି ପଞ୍ଚତୀର୍ଥ ହେଲ—

'ମାର୍କଣ୍ଡେୟୋ ବଟକୃଷ୍ଣୌ ରୌହିଣ୍ୟାଞ୍ଚ ମହୋଦଧୌ
ଇନ୍ଦ୍ରଦ୍ୟୁମ୍ନେ କୃତେ ସ୍ନାନ ପୁନର୍ଜନ୍ମ ନ ବିଦ୍ୟତେ ।'

**ଜନ୍ମ**—ପଞ୍ଚତୀର୍ଥର ପ୍ରଥମ ତୀର୍ଥ ହେଉଛି ମାର୍କଣ୍ଡେୟ ପୁଷ୍କରିଣୀ, ପୂଜିତ ଦେବତା ଶ୍ରୀମାର୍କଣ୍ଡେୟ (ପଞ୍ଚପାଣ୍ଡବଙ୍କ ମଧ୍ୟରୁ ଅର୍ଜୁନ, ପରଶୁ-ମୃଗବରାଭୟ ଚନ୍ଦ୍ରଶେଖର ବିଗ୍ରହ) ଶ୍ରୀମନ୍ଦିରର ଉତ୍ତର ପଶ୍ଚିମ କୋଣରେ ଅବସ୍ଥିତ । ଏହି ଶିବ ବିଗ୍ରହଙ୍କ ମସ୍ତକରେ ଦେବତାଙ୍କ ପ୍ରିୟପୁଷ୍ପ ଚମ୍ପକ (ଚମ୍ପା) ଓ ଜଳ ଚଢ଼ାଇବା ଦ୍ୱାରା (ଅଭିଷେକ) ପିତା ଶ୍ରୀ ନାରାୟଣ (ଅଗାଧୁ) ମହାପାତ୍ର ଓ ମାତା ଶ୍ରୀମତୀ ଲକ୍ଷ୍ମୀ ଦେବୀଙ୍କ ଔରସରେ ଶ୍ରୀ ମାର୍କଣ୍ଡେୟ ମହାପାତ୍ର ବୀର ଶ୍ରୀ ଗଜପତି ଗୌଡେଶ୍ୱର ନବକୋଟି କର୍ଣ୍ଣାଟୋତ୍କଳ ବାରାଧିବୀରବର ଶ୍ରୀଶ୍ରୀ ମୁକୁନ୍ଦଦେବଙ୍କ ୪୩ ଅଙ୍କ ୧୩୬୩ ସାଲ

ଶ୍ରାବଣ କୃଷ୍ଣ ତୃତୀୟା ସୋମବାର ଦିନ (ତା ୧୮-୭-୧୯୧୭) ଶ୍ରୀକ୍ଷେତ୍ରରେ ବିମାନବଡ଼୍ ସାହିରେ ଜନ୍ମ ଲାଭ କରିଥିଲେ ।

**ବାଲ୍ୟାବସ୍ଥା**—ପୂର୍ବରେ ଯାଗା ଆଖଡ଼ାର ସଂସ୍କୃତି ତତ୍କାଳୀନ ସମୟରେ ଜନସାଧାରଣ ତଥା ବ୍ୟକ୍ତିବିଶେଷଙ୍କ ଉପରେ ଯଥେଷ୍ଟ ପ୍ରଭାବ ପକାଉଥିଲା । ଶରୀର ଚର୍ଚ୍ଚା, ବିଦେଶୀ ଶତ୍ରୁ କବଳରୁ ଶ୍ରୀକ୍ଷେତ୍ର ତଥା କ୍ଷେତ୍ରାଧିପତି ପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ରକ୍ଷା କରିବା, ଝଗଡ଼ା ଓ ମନୋ-ମାଳିନ୍ୟ ସମାଧାନ କରିବା ବ୍ୟତୀତ ସଙ୍ଗୀତ ଓ ନୃତ୍ୟଚର୍ଚ୍ଚା, ଶିକ୍ଷଣ ପ୍ରଶିକ୍ଷଣ (Training) ରେ ଯାଗା ଆଖଡ଼ାର ଭୂମିକା ଉଲ୍ଲେଖଯୋଗ୍ୟ !

ମାର୍କଣ୍ଡଙ୍କ ପିତା ବାସଗୃହ ନିକଟରେ ଅବସ୍ଥିତ 'ଭଣ୍ଡଯାଗା'ର ଜଣେ ପ୍ରତିଷ୍ଠିତ ଓ ସମ୍ମାନିତ ସଭ୍ୟ । ଯାଗା ଆଖଡ଼ାର Memberକୁ 'ସଭ୍ୟ' ଅପେକ୍ଷା 'ସାଙ୍ଗ' ବୁଝାଯିବାରେ ଯୌକ୍ତିକତା ଉପଲବ୍ଧି କରାଯାଏ ! ସେ ଉକ୍ତ ଯାଗାରେ ଭାଙ୍ଗ ସାଙ୍ଗ ଓ ପଙ୍ଗତ ପର୍ଯ୍ୟାୟରେ ଓଡ଼ିଶୀ ଓ ଅନ୍ୟାନ୍ୟ 'ମେଳ ଗୀତ' ଗାନ କରୁଥିଲେ !

'ତୁଳସୀ ଦୁଇ ପତ୍ରରୁ ବାସିଲା' ପରି ଜୀବନର ପ୍ରାକ୍ ଅବସ୍ଥା ବାଲ୍ୟକାଳରୁ ମାର୍କଣ୍ଡଙ୍କ ଉପରେ ପିତୃଦତ୍ତ ଗୁଣର ପ୍ରତିଫଳନ ଆଜି ପରିଣତ ବୟସରେ ବେଶ ସୁସ୍ପଷ୍ଟ ! ପୂର୍ବରୁ ୧୨ ମାସରେ ୧୩ ଯାତ୍ରା ଟାଳନ ଅବସରରେ ସଙ୍ଗୀତ ଓ ନୃତ୍ୟ କାର୍ଯ୍ୟକ୍ରମ ନିଶ୍ଚିତଭାବେ ଜଡ଼ିତ ! ତେଣୁ, ଝୁଲଣ; ଦେବପୂଜା ଓ ଶ୍ରୀମନ୍ଦିରର ଉତ୍ସବ ବେଳେ ସଙ୍ଗୀତ ପ୍ରତି ମାର୍କଣ୍ଡ ଖୁବ୍ ଆକୃଷ୍ଟ । ବୈଷ୍ଣବ ପାଣି ଓ ବାଳକୃଷ୍ଣଙ୍କ ଯାତ୍ରା ସୁଆଙ୍ଗ ତାଙ୍କ ସାଙ୍ଗୀତିକ ଜୀବନର ମୂଳଦୁଆ କହିଲେ ଅତ୍ୟୁକ୍ତି ହେବ ନାହିଁ । ଘରୁ ଲୁଚି ଛପି ଯାତ୍ରା ଦେଖିବାକୁ ଯାଆନ୍ତି !

**ସେକାଳ ଓ ଏକାଳ**—ସେତେବେଳର ଯାତ୍ରା ପରିକଳ୍ପନା ଓ ସଙ୍ଗୀତ ପରିବେଷଣ ଲେଖକ ମାର୍କଣ୍ଡ ବାବୁଙ୍କ ମୁଖରୁ ଶୁଣି ଆଶ୍ଚର୍ଯ୍ୟ ହୋଇଗଲି । ମଞ୍ଚ ଆଲୋକ ପାଇଁ ମଶାଲ, ଦିଦୁଡ଼ି ଓ ବଡ଼ ବୋତଲରେ କିରାସିନ ଓ ବଳିତା ଦିଆଯାଇ ଜଳେ । ସବୁଠାରୁ ମଜା କଥା ହେଲା ଯେ ମୁକ୍ତ ମଞ୍ଚ (Open stage)ରେ ରଜା, ରାବଣ ପ୍ରଭୃତି ଭୂମିକାର ଅଭିନୟ

ହେଉଥିବା ସମୟରେ ବ୍ୟକ୍ତିର ମୁଖମଣ୍ଡଳର ସମ୍ପୂର୍ଣ୍ଣ ଅଭିବ୍ୟକ୍ତି ଜାଣିବା ପାଇଁ ଜଣେ ଢନ୍ତୁଡ଼ି ଧରି ମଞ୍ଚ ଉପରେ ଏପଟ ସେପଟ ହେଉଥାଏ ।

ସଙ୍ଗୀତାଂଶରେ ପ୍ରଚ୍ଛଦପଟ ଶିଳ୍ପୀ ତଥା ଅଭିନୟ କରୁଥିବା ବ୍ୟକ୍ତି ଗଳା ଫଟାଇ ଗୀତ ବୋଲୁଥାନ୍ତି ! ପରବର୍ତ୍ତୀ କାଳରେ ଗ୍ୟାସ ଲାଇଟ୍, ପଞ୍ଚ ଲାଇଟ୍ (ଆଜିକାଲି Day-lightର ପୂର୍ବାବସ୍ଥା) ବ୍ୟବହାର କରାଗଲା ।

**ସଙ୍ଗୀତ ଓ ମାର୍କଣ୍ଡେୟ**—ହାଇସ୍କୁଲ ପାଠପଢ଼ା ମାର୍କଣ୍ଡଙ୍କର ପୁରୀ ଲୋକନାଥଙ୍କ ରାସ୍ତାରେ ଅବସ୍ଥିତ ଏଡୱାର୍ଡ ଏମ୍.ଇ. (Edward M. E.) ସ୍କୁଲରେ (ବର୍ତ୍ତମାନର ଗଦାଧର ହାଇସ୍କୁଲ) ହୋଇଥିଲା । ପ୍ରଧାନ ଶିକ୍ଷକ ବାରହରେକୃଷ୍ଣପୁର ଶାସନନିବାସୀ ଶ୍ରୀକୃଷ୍ଣ ରଥ ଓ ଶ୍ରୀ ଦୀନବନ୍ଧୁ ମିଶ୍ର ସଙ୍ଗୀତାନୁରାଗୀ ଥିଲେ । ମାର୍କଣ୍ଡ ଗୀତ ବୋଲିବାକୁ ପ୍ରଥମେ ସେମାନେ ହିଁ ସୁଯୋଗ ଦେଇଥିଲେ ।

ଝୁଲଣ ସମୟରେ ଏମାରମଠ, ଶ୍ରୀରାମଦାସ ମଠ ଓ ପଞ୍ଜାବୀ ମଠକୁ ଦକ୍ଷିଣୀ ଗୋଟିପୁଅ (ଆଖଡ଼ାପିଲା) ନାଚିବାକୁ ଆସନ୍ତି । ଝୁଲଣ ୭ଦିନ ମାର୍କଣ୍ଡଙ୍କର ଏହି ମଠରେ ରାତି ବାରଟା ଗୋଟାଏ ପର୍ଯ୍ୟନ୍ତ କଟିଯାଏ । ସେମାନେ ବୋଲୁଥିବା ଓଡ଼ିଶୀ, ଛାନ୍ଦ, ଚମ୍ପୂ, ଚଉତିଶା, ସୁଆଙ୍ଗ, ଦ୍ୱୈତ ଗୀତ, ରାଧାକୃଷ୍ଣ ମିଳନାତ୍ମକ ଗୀତିକା ଶୁଣି; ସାତ ସାହି ଆଖଡ଼ାର ଯାତ୍ରା, ଚଇତିଘୋଡ଼ା ପ୍ରଭୃତିର ଗୀତ ଶୁଣି ଆସି ପିଲାମାନଙ୍କୁ ଏକାଠି କରି ତାଙ୍କୁ ଶିଖାଇ ଆନନ୍ଦ ପାଆନ୍ତି । ଭଗବତୀ କୋଠ ଆଖଡ଼ାର ଗୁରୁ ରାମଚନ୍ଦ୍ର ଦାସ ଉଚ୍ଚାଙ୍ଗ ଓଡ଼ିଶୀ ମାର୍କଣ୍ଡଙ୍କ ହୃଦୟରେ ଆଲୋଡ଼ନ ସୃଷ୍ଟି କରିଥିଲା ।

ରାଗ, ରାଗିଣୀ, ଜ୍ଞାନ ପ୍ରତି ଆଦୌ ଧାରଣ ନଥିଲା । କେବଳ ହାତ ବା ପାଦରେ ଧାପ (Rhythm) ତାଳ ଦେଇ ଗୀତର ଗତି ଠିକ୍ କରି ବୋଲୁଥିଲେ ।

ସମବେତ କଣ୍ଠ ସଙ୍ଗୀତ (Chorous Song) ବା ମେଳ ସଙ୍ଗୀତ ମାର୍କଣ୍ଡଙ୍କର ସଙ୍ଗୀତକୁ ଉଜ୍ଜୀବିତ କରିଥିଲା । ହରିହର ରାଜଗୁରୁ, ବିଦ୍ୟା ମିଶ୍ର, ଚିନ୍ତାମଣି ମିଶ୍ର, ନରସିଂହ ମିଶ୍ରଙ୍କର ନାମ ଏଥିପାଇଁ ଉଲ୍ଲେଖ ଯୋଗ୍ୟ ।

ବର୍ତ୍ତମାନ ପୁରୀର ଟାଉନଥାନା ଚଣ୍ଡଶା ସୁଦର୍ଶନ ପଡ଼ିଆରେ ଥିଏଟର (ନାଟକ, ଗୀତ) ପ୍ରଭୃତି ହୁଏ । ମୋହନ ସୁନ୍ଦର ଦେବଗୋସ୍ୱାମୀ, ଗୋପାଳ ସୁନ୍ଦର ଦେବଗୋସ୍ୱାମୀଙ୍କ ରଚିତ, ନିର୍ଦ୍ଦେଶିତ ତଥା ଅଭିନୀତ ନାଟକ, ଶ୍ରୀକୃଷ୍ଣଙ୍କ ରାସଲୀଳାର ମନମତାଣିଆ ସ୍ୱରବଦ୍ଧ ସଙ୍ଗୀତ ୧୫ ୧୬ ବର୍ଷ ବୟସ୍କ ମାର୍କଣ୍ଡଙ୍କୁ ବେଶ ଖୋରାକ ଯୋଗାଇଥିଲା, ସଙ୍ଗୀତ ସାଧନା କ୍ଷେତ୍ରରେ । ମାତ୍ର ଦୁଇପଇସା ଓ (ଏକଅଣା) ମୂଲ୍ୟର ଟିକେଟ କରି ରୁଞ୍ଜ ଉପରେ ବସି ଯାତ୍ରା, ନାଟକ ଦେଖିବାର ଝୁଙ୍କ୍ ତାଙ୍କୁ ପାଠ ଅପେକ୍ଷା ସଙ୍ଗୀତ ଢଗରେ ଆଗେଇ ନେଲା ।

ବାର୍ତ୍ତାଳାପ ଛଳରେ ମାର୍କଣ୍ଡ କହିଲେ '୧୯୩୦—୩୧ ମସିହାର ଏକ ଘଟଣା । ପ୍ରଭୁପାଦ ମୋହନ ଗୋସେଇଁଙ୍କର ଥିଏଟର ଦେଖିବା ପାଇଁ ଦର୍ଶକଙ୍କ ସମ୍ମୁଖରେ ୨ଟି ଚୌକି ବିଶେଷ ଭାବେ ଉଦ୍ଦିଷ୍ଟ ଥାଏ— ଏମାରମଠାଧୀଶ ଓ ପୁରୀର ଗଜପତି ମହାରାଜାଙ୍କ ପାଇଁ । ଏକଦା ଋଷି ଝୁଣ୍ଟିଆଙ୍କ ପ୍ରପୌତ୍ର ହଜୁରୀ ବଳଭଦ୍ର ଝୁଣ୍ଟିଆ (ଜଣେ ସଙ୍ଗୀତ ପ୍ରେମୀ) ଯାଇ ଗୋଟିଏ ଚୌକିରେ ବସି ପଡ଼ିବାରୁ ଅପମାନିତ ହେଲେ ! ପଡ଼ୋଶୀ ତଥା ଜନୈକ ବନ୍ଧୁ ଶ୍ରୀ ସୋମନାଥ ଚିନରା ଓରଫ୍ ସମନ୍ତ ଚିନରାଙ୍କ ସହ ମିଳିଆସି ତା' ପରଦିନଠାରୁ ଧନାଢ୍ୟ ପିତାଙ୍କ ନିର୍ଦ୍ଦେଶରେ ଶ୍ରୀଲୋକନାଥ ରୋଡ଼୍‌ରେ 'ହଜୁରୀ ଥିଏଟର୍ସ' ବା 'ହଜୁରୀ ପେଣ୍ଡାଲ' ନିର୍ମାଣ କରି ସଙ୍ଗୀତ, ଗୀତ ତଥା ନାଟକ ମଞ୍ଚସ୍ଥ କଲେ ! ସମନ୍ତ ଚିନରା (ବେହେଲା), ଯୋଗୀନାହାକ (ପଖାଉଜ) ଗଙ୍ଗାଧର ମହାପାତ୍ର (ଶିକ୍ଷକ ତଥା ଲେଖକର ପିତୃଦେବ) ତବଲା, ଭିକାରୀ ଦଳେଇ, ଗୋପାଳ ଘୋଷ (ହାରମୋନିୟମ) ଓ ହଜୁରୀ ନିଜେ ବଂଶୀବାଦକ ଭାବେ କାର୍ଯ୍ୟ କରନ୍ତି ।"

ବଡ଼ପଣ୍ଡା ହରିହର ଗୁରୁଙ୍କ ଦ୍ୱାର ସାମନାରେ ଶ୍ରୀରାମଲୀଳା ମାସ ମାସ ଧରି ଅନୁଷ୍ଠିତ ହୁଏ । ଅଭିନୟ ଅପେକ୍ଷା ଗୀତର ସ୍ୱର, ତାଳ, ଲକ୍ଷ୍ୟ କରିବା ପ୍ରଧାନ ଥିଲା ମାର୍କଣ୍ଡଙ୍କର ।

କଲିକତାର ମିନର୍ଭା ଥିଏଟର୍ସ (Minerva Theatres) ଦଳ ଆସି ହଜୁରୀ ପେଣ୍ଡାଲରେ ନାଟକ କଲେ । ସେତିକିବେଳେ ଆମେ ଜାଣିଲୁ ଯେ ସ୍ତ୍ରୀଲୋକ ମଞ୍ଚରେ କିପରି ପାର୍ଟ କରନ୍ତି । କାରଣ ସଙ୍ଗୀତ

ଓ ଅଭିନୟ ଏକ ଗଣିକା-ଶଦ୍ୟାଙ୍କଠାରେ କୁସଂସ୍କାର ଥିଲା । ତେଣୁ ନାଗ-ମଞ୍ଚ-କଳା ଏକ ଧର୍ମଭୃଷ୍ଟ ଅଜ୍ଞାତ ଅଧ୍ୟ ପୁ କହୁଥିଲେ ଚଳେ ।

## ସଙ୍ଗୀତ ଶିକ୍ଷା : ଗୁରୁ ପରମ୍ପରା—

ମାର୍କଣ୍ଡଙ୍କ ସଙ୍ଗୀତ-ଜୀବନର ଶୈଶବାବସ୍ଥା ପରେ କୈଶୋର ଅବସ୍ଥା ଆରମ୍ଭ ହେଲା । ୧୯୩୮ ମସିହାରେ ତାଙ୍କର ପ୍ରଥମ ଗୁରୁ ହେଲେ ଓଡ଼ିଶାର ସ୍ୱନାମଧନ୍ୟ ସଙ୍ଗୀତଜ୍ଞ, ଦେଶରଜା ଗାୟକରତ୍ନ ଓଡ଼ିଶୀ ସଙ୍ଗୀତର ମଉଡ଼ମଣି ତଥା ମୂର୍ଦ୍ଧନ୍ୟ କଳାକାର ଓଡ଼ିଶୀ ସଙ୍ଗୀତ ବିଶେଷଜ୍ଞ ସ୍ୱର୍ଗତ ସିଂହାରୀ ଶ୍ୟାମସୁନ୍ଦର କର । ତାଙ୍କର ତତ୍ତ୍ୱାବଧାନରେ ପୁରୀ ସହରସ୍ଥ 'କାଳକାକୋଠ'ରେ ସଙ୍ଗୀତ ଶିକ୍ଷା ଆରମ୍ଭ ହେଲା ।

"ଯାଦୃଶୀ ଭାବନା ଯସ୍ୟ ସିଦ୍ଧିର୍ଭବତି ତାଦୃଶୀ" ଯାର୍ଦ୍ଧଦାନର ଅପେକ୍ଷିତ, ବିକମ୍ପିତ ହୃଦସ୍ପନ୍ଦନ, ବେସୁରା ରାଗ ରାଗିଣୀ ଜୀବନ୍ତ, ହୃଦୟ-ଗ୍ରାହୀ ହୋଇ ଉଠିଲା; ମାର୍କଣ୍ଡଙ୍କ କଣ୍ଠରେ ସେଇ ଗୁରୁ ପରମ୍ପରାର ଆଦର୍ଶ ବ୍ୟକ୍ତି 'ସିଂହାରୀଙ୍କର' ଅମୃତମୟ କାଞ୍ଚନ ପରଶରେ, ଆତ୍ମସନ୍ତୋଷ ପୂର୍ଣ୍ଣ ଆଶିଷ ଧାରାରେ । ସଙ୍ଗୀତ-ବୀଣାର ଛିନ୍ନତନ୍ତ୍ରୀ ଝଂକୃତ ହେଲା ବାଣୀ-ସାଧନାର ଅପୂର୍ବ ଛଟାରେ । ସୁପ୍ତ ସଙ୍ଗୀତ—କଳାତ୍ମକ ପୁରୁଷର ଜୀବନ୍ୟାସ ହେଲା । ଗର୍ଭଧାରଣୀ ମାତା କହନ୍ତି "ଆରେ ମାରକଣ୍ଡ ସଙ୍ଗୀତ କରି ତୁ ସର୍ବନଷ୍ଟ ହେଲୁ । ଜୀବନ ଧାରଣ କ'ଣ ଏଇଥିରେ ହବ ?"

୧୯୩୯ ମସିହାରେ ପାଟନା ବିଶ୍ୱବିଦ୍ୟାଳୟରୁ ପ୍ରବେଶିକା ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ । ଆର୍ଥିକ ଦୁରବସ୍ଥା ଯୋଗୁ ଉଚ୍ଚ ଶିକ୍ଷାରୁ ବଞ୍ଚିତ ହେଲେ ।

ତାଙ୍କର ସହପାଠୀ ଥିଲେ ମଲ୍ଲିକ, ରମିନ ଖୁଣ୍ଟିଆ, କାଶୀନାଥ ପୂଜାପଣ୍ଡା, ଲୋକନାଥ ରଥ, ଲୋକନାଥ ପାଳ, ଦାସ ପତି, ବନ୍ଧୁ ଖୁଣ୍ଟିଆ, ବାମନ ସୁଆର, ନୃସିଂହ ନାଥ ଖୁଣ୍ଟିଆ ପ୍ରମୁଖ ବ୍ୟକ୍ତିମାନେ ।

## ବିଶ୍ୱଯୁଦ୍ଧରେ ଶ୍ରୀ ମାର୍କଣ୍ଡ—

୧୯୪୨ ମସିହା ଦ୍ୱିତୀୟ ବିଶ୍ୱଯୁଦ୍ଧର ବିଭୀଷିକା, ଇଂରେଜ ଶାସନର ନର୍ଯ୍ୟାତନା, ଉଦ୍ରର ଏକ ସଙ୍କଟମୟ ମୁହୂର୍ତ୍ତରେ ପିତୃବିୟୋଗ

ମାର୍କଣ୍ଡଙ୍କର ମନ-ମୀନକୁ ଶଙ୍କା-ସାଗରରେ ବୁଡାଇ ଦେଲା । ଜୀବିକା ନିର୍ବାହ, ତେଲ-ଲୁଣ ସଂସାରର ଜଞ୍ଜାଳ, ସଙ୍ଗୀତ ଚର୍ଚ୍ଚା, ଶିକ୍ଷା ବିପର୍ଯ୍ୟୟ, ଯୁଦ୍ଧ ସବୁକଣ୍ଟ ଅଭ୍ୟାସ କଲା । କିନ୍ତୁ ମାର୍କଣ୍ଡ, ବ୍ରତି ମାର୍କଣ୍ଡଙ୍କ ପରି ଅବିଚଳିତ ରହିଲେ । ଦେଶମାତୃକାର ସେବା ନିମନ୍ତେ ଆଗଭର ହେଲେ ସେ । ଯୁଦ୍ଧକାଳୀନ ଭିତ୍ତିରେ ସେ ଯୋଗଦେଲେ ସିଭିଲ ଡିଫେନ୍‌ସରେ ମାତ୍ର କୋଡ଼ିଏ ଟଙ୍କା ଦରମାରେ । ପ୍ୟାରେଡ଼ କରିବା, ସାହି ବାସିନ୍ଦାମାନଙ୍କର ଖାଉଟୀ କାର୍ଡ ଯାଞ୍ଚ କରିବାକୁ ହେଲା । କେବଳ ମନୋରଞ୍ଜନ ଛଡ଼ା ସଙ୍ଗୀତର ଚର୍ଚ୍ଚା ହେବାର ସୁଯୋଗ, ସୁବିଧା, ଚେଷ୍ଟାରୁ ସେ ବଞ୍ଚିତ ହେଲେ ।

## ଯନ୍ତ୍ରରେ ରନ୍ଧ୍ର—

କିଛିଦିନ ପରେ ମହାପାତ୍ରେ ୧୦ ଟଙ୍କାରେ ଖଣ୍ଡିଏ ହାରମୋନିୟମ୍ କିଣି ସ୍ୱର-ସାଧନାର ଅଙ୍କୁରିତ ଗଛଟିରେ ପାଣି ମୁନ୍ଦାଏ ଦେଲେ । ସ୍ଥାନୀୟ ଭୋଜଭାତ, ସମାଗମ ଦେଗା ଆଖଡ଼ାର ନିମନ୍ତ୍ରଣ "ଅବଧାନ, ଆଜ୍ଞା ! ଆସିବା ହେବେ । ଗୋଟାଏ ଯୋଡ଼ା ହୋଇଛୁ (ଫିଷ୍ଟ) ।" ସେତେବେଳେ ସଙ୍ଗୀତ ବୃତ୍ତିଭିତ୍ତିକ ବା ଧନ-ପ୍ରାପ୍ତିମୂଳକ ନଥିଲା । ଆଦର, ସମ୍ମାନ, 'ଗାଆଣ ବାଜଣ' ଓ ଭୂରିଭୋଜନରେ ମହାପାତ୍ରଙ୍କର ସଙ୍ଗୀତ ପଲ୍ଲବିତ ହେବାକୁ ଲାଗିଲା । କିନ୍ତୁ ।—

ସିଭିଲ୍ ଡିଫେନ୍‌ସ ଗ୍ଲାଡ଼ ୧୯୪୫ ମସିହା ବାଲୁଗାଁ କୃଷିବିଭାଗୀୟ ଓଭରସିୟର ପଦରେ ସେ ଯୋଗଦେଲେ । କିଛିଦିନ ପରେ ସେ ସେହି ଚାକିରିରୁ ଇସ୍ତଫା ଦେଇ ଯୋଗାଣ ବିଭାଗରେ ଯୋଗ ଦେଲେ । ଏ ଚାକିରିର ପ୍ରଲୋଭନ ତାଙ୍କୁ ବିଚଳିତ କରିପାରିଲା ନାହିଁ । ସରକାରଙ୍କ ବିଧି ବିଧାନ ସମ୍ବିଧାନ ବଳରେ ବହୁନ୍ନ ସ୍ଥାନକୁ ଗସ୍ତ କରିବାଦ୍ୱାରା ତାଙ୍କ ଜୀବନର ପ୍ରାଣକେନ୍ଦ୍ର ସଙ୍ଗୀତରେ ବାଧା ଆସିଲା ।

ମହାପାତ୍ରେ ପର୍ଯ୍ୟାୟକ୍ରମରେ ଛାଡ଼ିଲେ ଜିଲ୍ଲା ପରିଷଦ ଓ ସର୍ବଶେଷରେ ସାମନ୍ତ ଚନ୍ଦ୍ରଶେଖର କଲେଜରେ ଚାକିରି ।

## ଚାକିରୀ ମୋହ ହାରିଗଲା—

ମାର୍କଣ୍ଡଙ୍କ ଜୀବନରେ ଜନମନରଞ୍ଜନକାରୀ ସଙ୍ଗୀତ ପାଇଁ ସରକାରୀ ବେସରକାରୀ ଚାକିରୀ-ମୋହର ସମାପ୍ତି ଘଟିଲା ।

୧୯୪୨-୧୯୪୮ ମଧ୍ୟରେ ପ୍ରେରଣାସିକ୍ତ ହେଲେ ମାର୍କଣ୍ଡ ସଙ୍ଗୀତର ମାର୍ତ୍ତଣ୍ଡ ରଶ୍ମିରେ । ସଙ୍ଗୀତ ମୀନାରର ପ୍ରଥମ ପାବଚ୍ଛ ଉଚ୍ଚଯେଗା—ସାହ୍ବସାଡରେ ଅଂଶଗ୍ରହଣ ।

ହେ ସୁଧୀ ପାଠକବର୍ଗ ! ଏଠାରେ ସାମାନ୍ୟ ବ୍ୟତିକ୍ରମ କରିବାକୁ ବାଧ୍ୟ ହେଉଛୁ । ଲେଖକ ଓ ମାର୍କଣ୍ଡବାବୁଙ୍କ ମଧ୍ୟରେ କଥୋପକଥନ କ୍ରମରେ ମାର୍କଣ୍ଡବାବୁଙ୍କର ଅଭିବ୍ୟକ୍ତି ଖୁବ୍ ଭାବବ୍ୟଞ୍ଜକ, ତପୋତ୍ତୀର୍ଣ୍ଣ ଓ ମର୍ମସ୍ପର୍ଶୀ ଥିଲା । ଲେଖକ ଆତ୍ମବିସ୍ମୃତ ଭାବେ ପାନ କରୁଥାଏ ସଙ୍ଗୀତଜ୍ଞଙ୍କ ବର୍ଣ୍ଣନା, ସଙ୍ଗୀତ ଓ ଭାବପ୍ରକାଶର ଅମୀୟ ପୀୟୁଷ । ତାଙ୍କର ପାର୍ଶ୍ୱ କେପୋଳଦେଶର ବର୍ଦ୍ଧିତ ଚନ୍ଦନ ଫୋପା ଉଦ୍‌ଭାସିତ, ମୁଖମଣ୍ଡଳ, ଉଜ୍ଜ୍ୱଳ ଚକ୍ଷୁ ବସ୍ତ୍ରାଚ୍ଛାଦିତ । ସେ ନର୍ଭୀକ ଭାବରେ କହି ଚାଲିଥାନ୍ତି । ଚାକିରି ବର୍ଜ୍ଜନ କରି ସଙ୍ଗୀତ ସାଧନା କରିବାକୁ ପ୍ରସ୍ତୁତି ହୋଇଛନ୍ତି—ସତେ କି ଅବା ଆଲ୍ଲାଉଦ୍ଦିନ୍ ଖିଲଜି ଚିତୋରର ଦୁର୍ଗ ଅଧିକାର କରି ଫେରୁଛନ୍ତି କି ? ଶିଳ୍ପୀଙ୍କର ସଙ୍ଗୀତ ସାଧନାର ପର୍ଯ୍ୟାପ୍ତ-ଭୂକ୍ତ କର୍ମପ୍ରବାହକୁ !

ସୁନ୍ଦର, ଗୌର ବଳିଷ୍ଠ ବପୁରେ ହରତାଳ ଲେପନ, ବେକରେ ସୁନାହାର, ହାତରେ ପଥରବସା ମୁଦି ପିନ୍ଧି ଖଣ୍ଡା ଗୋଟିଏ ବା ଦୁଇ-ହାତରେ ୨ଟି ଧାରଣ କରି ସମର—କୌଶଳ ପ୍ରଦର୍ଶନ ତାଙ୍କ ଜୀବନର ଉଲ୍ଲେଖଯୋଗ୍ୟ ଘଟଣା । ସେହି ଖଣ୍ଡାଖେଳକୁ ଉତ୍ତାଣ ତାଲପା, ଦୋ ଦସ୍ତି, ଚଉଦସ୍ତି, ପଟା ଛଡ଼ି ପ୍ରଭୃତି ନାମକରଣ କରାଯାଏ !

ସ୍ୱ ପିତୃ ଓ କନିଷ୍ଠ ପିତୃବ୍ୟଙ୍କର ସାଙ୍ଗୀତିକ ପ୍ରଭାବ, ଦେଶ୍ୟାଡନା ବ୍ୟକ୍ତିତ ବାଦ୍ୟବିନୋଦ ତବଲାବାଦକ ବୟୋଜ୍ୟେଷ୍ଠ ଶ୍ରୀ କ୍ଷେତ୍ରମୋହନ କର ଓ ବୃନ୍ଦାବନ ସ୍ୱାମୀ କଂଠ ସଙ୍ଗୀତ ଗୁରୁ ଶ୍ରୀ ନୀଳକଣ୍ଠ ମିଶ୍ରଙ୍କ ବ୍ୟକ୍ତିଗତ ପ୍ରେରଣା ମାର୍କଣ୍ଡଙ୍କୁ ଓଡ଼ିଶୀ ଗାୟନରେ ଯଥେଷ୍ଟ ସାହାଯ୍ୟ କରିଛି । କଳୁ, ସଙ୍ଗୀତ ଚର୍ଚ୍ଚା ଓ ଆସର ସମୟରେ ଶ୍ରୀକୃଷ୍ଣ ଭୂଷଣର ସମର ଗୁରୁତର ହେଲାପରି ମାର୍କଣ୍ଡେୟ ଅନ୍ୟାନ୍ୟ ପ୍ରତିଯୋଗୀମାନଙ୍କ ସହ ସଙ୍ଗୀତ-ଯୁଦ୍ଧରେ ଉତ୍ତୀର୍ଣ୍ଣ ହୁଅନ୍ତି ।

## ଜୀବନର ନୂତନ ମୋଡ଼—

୧୯୪୮ ମସିହା ଜୀବନର ଅନ୍ୟତମ ମାଇଲ୍ ଖୁଣ୍ଟ । ଭାରତ ସରକାରଙ୍କ ନୂତନଭାବେ ଗଢ଼ିଉଠୁଥିବା ଗଣପ୍ରସାରଣ ସଂସ୍ଥା—'କଟକ

ଆକାଶବାଣୀ ।" ବାଣୀକଣ୍ଠ ନିମାଇଁଚରଣ ହରିଚନ୍ଦନ, ବସନ୍ତ କୋକିଳ ଅଙ୍ଗୁରବାଳା ପତ୍ନୀଙ୍କର ଉଚ୍ଚାଙ୍ଗ ଓ ଲଘୁ ସ୍ୱରଧ୍ୱନିର ଆକର୍ଷଣ କଲା ମାର୍କଣ୍ଡଙ୍କୁ । ଶ୍ରୁତି ପରୀକ୍ଷଣ ମୁହୂର୍ତ୍ତ ଆସିଲେ ! ହାରମୋନିୟମ ଧରି ଆଜ ସ୍ୱର ମିଳାଇଲେ ସି-ସାର୍ପରେ । ପାଖରେ ଆକାଶବାଣୀ କଳାକାର ଶ୍ରୀ ରାଧାଗୋବିନ୍ଦ ଘୋଷ ତବଲା ମିଳାଉଥାନ୍ତି ।

ଲେଖକଙ୍କ ସମକ୍ଷରେ ମାର୍କଣ୍ଡବାବୁ ପୂର୍ବ ସ୍ମୃତିର ସ୍ୱାରକୀ ସ୍ୱରୂପ ଆରମ୍ଭ କଲେ—

"ବଞ୍ଚିବ କେମନ୍ତରେ
ପ୍ରାଣ ବାନ୍ଧିବାରେ ହାଣ କରିଛୁ ବାରେ
ଜାଣ ରମଣୀ ପରମାଣି କରି
କହୁଛୁ ତୋରେ"

ମୁଁ ଅଳ୍ପ କୌତୁହଳୀ ହୋଇ ମନେ ପକାଇଲି—ଆକାଶବାଣୀର ଶାସ୍ତ୍ରୀୟ ସଙ୍ଗୀତ ଶିକ୍ଷାରେ ସଙ୍ଗୀତଜ୍ଞ ଶ୍ରୀ କିଶୋର ଚନ୍ଦ୍ର ମୈତିଙ୍କର ମେଘ-ମହ୍ଲାରର ମନ୍ଦ୍ର ବର୍ଦ୍ଧିତ ସ୍ୱର 'ଆଜ କେଉଁ ରାଗ ?' 'ଗାଇବା ସମୟ' 'ବାଦୀ ସମ୍ବାଦୀ' 'ଆରୋହ' 'ଅବରୋହ' ପ୍ରଭୃତି କେତେକ ପ୍ରାରମ୍ଭିକ ପ୍ରଶ୍ନ ।

ଆଜ ପଚାରିଲି—'ଆଜ୍ଞା ! କେଉଁ ରାଗ ?' ଉତ୍ତରରେ ପାଇଲି 'ଶଙ୍କରାଭରଣ'—ତାଳ 'ଏକତାଳି' ।

ତାପରେ ଗୁରୁଙ୍କୁ ସ୍ମରଣ କରି ସେ ଆରମ୍ଭ କଲେ ବାଲ୍ମୀକି ରାମାୟଣରୁ କବି ବିଶ୍ୱନାଥ ଖୁଣ୍ଟିଆଙ୍କ ରଚିତ ୫ମ ବରାଡ଼ି ବୃତ୍ତରେ—

ହାଃ ପ୍ରିୟା କଷ୍ଟ ଶୁଣି ହନୁମୁଖୁ ରଘୁମଣି
ସୁମରି ହୃଅନ୍ତି ଗୁଣ ଗୁଣି...

ଏହି ଦୁଇଟି ଗୀତ ପରିବେଷଣ କରି ମାର୍କଣ୍ଡ ମହାପାତ୍ରେ ଉତ୍ତୀର୍ଣ୍ଣ ହୋଇ ଚୁକ୍ତିପତ୍ରରେ ସ୍ୱାକ୍ଷର କରି ଫେରିଲେ ।

ସେ ସମୟର ଗୀତ ପ୍ରଚ୍ଛର, ଶବ୍ଦଗ୍ରହଣ କପରି ଥିଲା— ଉତ୍ତରରେ ସେ କହନ୍ତି !—

ଅ଼ଜକାଲି ପରି କ୍ୟାସେଟ୍ କମ୍ବା ଟେପ୍ ରେକର୍ଡ଼ିଂ କରାଯାଉ-ନଥିଲା । ଆକାଶବାଣୀ କେନ୍ଦ୍ରରେ ଶିଳ୍ପୀ ପ୍ରତ୍ୟକ୍ଷଭାବରେ ଉପସ୍ଥିତ ହୋଇ ଗାୟନ, ବାଦନ କରୁଥିଲେ ଏବଂ ସଙ୍ଗୀତ, ଭାଷଣ ଇତ୍ୟାଦିର ସିଧାସଳଖ ପ୍ରସାରଣ କରାଯାଉଥିଲା । ତେଣୁ ଆମକୁ ୨।୩ ଦିନ ସେଠାରେ ରହିବାକୁ ପଡୁଥିଲା । ସଙ୍ଗୀତଜ୍ଞ ମୁଷ୍ଟିମେୟ ଥିବାରୁ ମାସକରେ ୩ଥର ୪ଥର କଣ୍ଟ୍ରାକ୍ଟ ମିଳୁଥିଲା । ୧୦ ଟଙ୍କା ବା ୧୫ ଟଙ୍କା ମିଳେ । ନିର୍ବାଚିତ ଶ୍ରେଷ୍ଠ ସଙ୍ଗୀତକୁ ଆକାଶବାଣୀ କର୍ତ୍ତୃପକ୍ଷ ମାଷ୍ଟର ରେକର୍ଡ କରି ରଖନ୍ତି । ଗୀତ ଗାୟନ ସମୟରେ ହାରମୋନି ପାଇଁ ମଧ୍ୟ ପଖାଉଜ ପ୍ରଚଳନ ନଥିଲା । ତବଲା, ତାନପୁରା, ସିତାର, ବେହେଲା ବ୍ୟବହାର କରାଯାଉଥିଲା ।

**ସଙ୍ଗୀ, ସଙ୍ଗୀତ ଓ ଭଙ୍ଗୀ**—ସଙ୍ଗୀତଗୁରୁ ମାର୍କଣ୍ଡ ବଡ଼ ସଙ୍ଗଲିପ୍ସୁ । ବର୍ତ୍ତମାନର ଚାରି ଅପେକ୍ଷା ସେହି ବହୁତ ବର୍ଷର ମୂଳ ଭିଜଡ଼ିତ ସଙ୍ଗୀମେଳରେ ବାଣୀସାଧନା କଥା ଦେଖନ୍ତୁ ।

ଜୟପୁର ରାଜା ବିକ୍ରମଦେବଙ୍କ ପୃଷ୍ଠପୋଷିତ କୋଠିର ପରିଚାଳକ ଥାନ୍ତି ମାଳମଣି ପାଣିଗ୍ରାହୀ, ଶିଳ୍ପୀ ସଙ୍ଗୀତଜ୍ଞ ରଘୁନାଥ ପାଣିଗ୍ରାହୀଙ୍କ ପିତୃଦେବ । ତେଣୁ ମାର୍କଣ୍ଡ ଓ ରଘୁନାଥଙ୍କର ଅପୂର୍ବ ମିଳନ ।

ସମସାମୟିକ ଭାବରେ ବୟସ୍କ ସବଂଶୀ ନୃସିଂହନାଥ ଖୁଣ୍ଟିଆ, ଲୋକନାଥ ରଥ, କାଶୀନାଥ ପୂଜାପଣ୍ଡା, ଶ୍ରୀମତୀ ବସ୍ତ୍ରପ୍ରିୟା ସାମନ୍ତ ସିଂହାର, ଲୋକନାଥ ପାଳ, ଦାମୋଦର ମହାପାତ୍ର, କୃଷ୍ଣଚନ୍ଦ୍ର ପୂଜାପଣ୍ଡା ଓରଫ ଭଜପଣ୍ଡା, ରଘୁନାଥ ପାଣିଗ୍ରାହୀ ପ୍ରମୁଖ ସଙ୍ଗୀତ-ରାଜ୍ୟର ବଡ଼ପଣ୍ଡାମାନେ ଗୁରୁ ସ୍ୱର୍ଗୀୟ ସିଂହାରି ଶ୍ୟାମସୁନ୍ଦର କରଙ୍କ ତତ୍ତ୍ୱାବଧାନରେ ସଙ୍ଗୀତ ଚର୍ଚ୍ଚା, ଗାୟନ, ଆସରରେ ଯୋଗଦାନ କରୁ-ଥିଲେ ।

ସଙ୍ଗୀତ ବିଷୟରେ ମତାନୈକ, ବିରୋଧ ଥିଲେ ମଧ୍ୟ ବ୍ୟକ୍ତିଗତ ତଥା ସାଧାରଣ ସେବା କ୍ଷେତ୍ରରେ ଶିଳ୍ପୀ ପ୍ରାଣର ପ୍ରାଚୁର୍ଯ୍ୟ ମଧ୍ୟରେ ମାର୍କଣ୍ଡ ସମସ୍ତଙ୍କର ପ୍ରିୟଭାଜନ ।

ଏହି ପରିପ୍ରେକ୍ଷୀରେ ଓଡ଼ିଶୀ ସଙ୍ଗୀତରେ ଅଗ୍ରସର ହେବା ପାଇଁ ମାର୍କଣ୍ଡଙ୍କୁ ଯଥାବଧି ସମୟ ଓ ସୁଯୋଗ ମିଳିପାରିଲା । ବିଶେଷତଃ ଶ୍ରୀମନ୍ଦିରରେ ଶ୍ରୀଜୀଉଙ୍କର ଝୁଲଣ ମହୋତ୍ସବ ଅବସରରେ 'ଝୁଲଣ ମୁଣ୍ଡେଇ' ତଳେ (ମୁକ୍ତିମଣ୍ଡପ ନିମ୍ନ ଚକଡାରେ) କେବଳ ଓଡ଼ିଶୀ-ସଙ୍ଗୀତ ଗାୟନରେ ମାର୍କଣ୍ଡ ଓ ସଙ୍ଗୀତ-ବନ୍ଧୁଗଣ ଭାବାବେଶରେ ନିମଜ୍ଜିତ ରହୁଥିଲେ ।

ସଙ୍ଗୀତ ବ୍ୟକ୍ତିତ ସାହିତ୍ୟ ଓ ସାଙ୍ଗଠନିକ କ୍ଷେତ୍ରରେ ମହାପାତ୍ରଙ୍କର ପାରଦର୍ଶିତା ପ୍ରଣିଧାନଯୋଗ୍ୟ । ୧୯୩୭ରେ ପ୍ରଥମେ କଟକରେ ସଙ୍ଗୀତ ସମ୍ମିଳନୀ ଅନୁଷ୍ଠିତ ହେଲା । ସର୍ବଶ୍ରୀ ଶ୍ୟାମସୁନ୍ଦର ଧୀର, କ୍ଷେତ୍ରମୋହନ କର, ଦୟାନିଧି ତ୍ରିପାଠୀ (ଶ୍ରୀରାମଚନ୍ଦ୍ରପୁର) ପ୍ରତିଯୋଗୀ ଭାବେ ଯୋଗ ଦେଇଥିଲେ ।

୧୯୩୪ରେ ପୁରୀ 'ହରଜୀ ପେଣ୍ଡାଲ'ରେ ସିଂହାରୀଙ୍କ ଉଦ୍-ଯୋଗରେ ଏହି ସମ୍ମିଳନୀରେ ମାର୍କଣ୍ଡ ଯୋଗଦେଇ ସାଙ୍ଗଠନିକ ଅନୁଭୂତି ଅର୍ଜନ କରିବା ସଙ୍ଗେ କେତେକ ମୁଖ୍ୟବ୍ୟକ୍ତି ତଥା ସଙ୍ଗୀତଜ୍ଞଙ୍କ ସଂସ୍ପର୍ଶରେ ଆସିବାର-ସୁଯୋଗ ଲାଭ କରିଥିଲେ । ସେମାନେ ହେଲେ କେନ୍ଦ୍ରାପଡ଼ାର ଶ୍ରୀ ଗୋକୁଳବିହାରୀ ଶ୍ରୀଚନ୍ଦନ, ମଧୁଘୋଷ, ବିଷମକଟକ ରାଜା ବ୍ରଜସୁନ୍ଦର ଦାସ, ରଣପୁର ରାଜମାତା ।

ଏମାରମଠାଧୀଶ ଗଦାଧର ରାମାନୁଜ ଦାସ ଓ ଲୋକନାଥ ପଟ୍ଟନାୟକଙ୍କ ଚେଷ୍ଟାରେ ଓଡ଼ିଶୀ ସଙ୍ଗୀତ ପରିଷଦ ଏମାର ମଠରେ ଆରମ୍ଭ ହେଲା ୧୯୫୨ ମସିହାରେ । ୧୯୫୫ ମସିହା ପର୍ଯ୍ୟନ୍ତ ଏହି ଅନୁଷ୍ଠାନରେ ସେ ଅଧ୍ୟାପନା କଲେ ।

**ସଙ୍ଗୀତଜ୍ଞଙ୍କ ସାନ୍ନିଧ୍ୟ**—ଶ୍ରୀ ବିଷ୍ଣୁ ଦିଗମ୍ବର ପଲୁଶକର ଓ ବିଷ୍ଣୁ ନାରାୟଣ ଭାତଖଣ୍ଡେ ହିନ୍ଦୁସ୍ଥାନୀ ସଙ୍ଗୀତର ରାଗରାଗିଣୀ ନେଇ ଏକ ପାଠ୍ୟକ୍ରମ ଓ ସଙ୍ଗୀତ-ବିଶ୍ୱବିଦ୍ୟାଳୟ ସୃଷ୍ଟି କଲେ ।

୧୯୫୪-୫୬ ସଙ୍ଗୀତ-ମନ୍ଦିରର ବାଇଶି ପାବଚ୍ଛ ଥିଲ ସଙ୍ଗୀତ-ଭକ୍ତ ମାର୍କଣ୍ଡେୟ ମହାପାତ୍ରଙ୍କର । ଉତ୍କଳ ନୃତ୍ୟନାଟ୍ୟ କଳା ପରିଷଦ (ବର୍ତ୍ତମାନର ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ) ଦ୍ୱାରା ପୁରୀରେ ସ୍ଥାପିତ

ହୋଇଥିବା ଓଡ଼ିଶୀ ଗବେଷଣା କେନ୍ଦ୍ରରେ କାର୍ଯ୍ୟ ନିର୍ବାହ କରିଥିଲେ । ସଙ୍ଗୀତ-ସେବା କ୍ଷେତ୍ରରେ ଡିଗ୍ରୀ ଓ ଡିପ୍ଲୋମା ଆବଶ୍ୟକ ପଡ଼ିବାରୁ ତୁଳନାତ୍ମକ ଅଧ୍ୟୟନ ପାଇଁ କ୍ଷିତୀଶ ମିଶ୍ର ଓ ସିଂହାରୀ ଶ୍ୟାମସୁନ୍ଦର କରଙ୍କଠାରୁ ହିନ୍ଦୁସ୍ଥାନୀ ସଙ୍ଗୀତର ଧ୍ରୁପଦ, ଧାମାର, ଖେୟାଲ, ଗଜଲ, ଠୁମ୍ରୀ ଇତ୍ୟାଦି ଶିକ୍ଷାଲାଭ କରି ଅଖିଳ ଭାରତ ଗାନ୍ଧର୍ବ ମହାବିଦ୍ୟାଳୟ ମଣ୍ଡଳ, ପୁନାଠାରୁ (A. B. G. M. M.) ୧୯୫୬ରେ ସିନିୟର୍ ଡିପ୍ଲୋମା ଓ ୧୯୫୯ରେ ପ୍ରୟାଗ ସଙ୍ଗୀତ ସମିତି, ଏଲାହାବାଦ ଠାରୁ "ବିଶାରଦ" ଉପାଧି (B. Mus) ପ୍ରାପ୍ତ ହେଲେ ।

**ସାଙ୍ଗଠନିକ କୃତିତ୍ୱ**—୧୯୫୪-୫୬ ଏହି ୩ ବର୍ଷ ସଙ୍ଗୀତ ଅଧ୍ୟୟନ ଚର୍ଚ୍ଚାରେ କଟିଗଲା ପୁରୀ ସଙ୍ଗୀତ କଳା ପ୍ରତିଷ୍ଠାନରେ । କବିସମ୍ରାଟ ବଳଦେବ ରଥଙ୍କ ଶ୍ୱଶୁରାଳୟ ଯେଉଁ ଗୋଲ୍ଲୁକାର ସାହିରେ ଅବସ୍ଥିତ, ସେଠାରେ ଦୁର୍ଗାମାଧବ ସଙ୍ଗୀତ ମହାବିଦ୍ୟାଳୟ ଆରମ୍ଭ ହୋଇଥାଏ । ଏଁ ବଟକୃଷ୍ଣ ଷଡ଼ଙ୍ଗୀ ଓ ନବକିଶୋର ମିଶ୍ର, ବୈଦ୍ୟନାଥ ମିଶ୍ର ଓ ମାର୍କଣ୍ଡ ମହାପାତ୍ର ସଙ୍ଗୀତ ଅଭ୍ୟାସ କରନ୍ତି ।

ହିନ୍ଦୁସ୍ଥାନୀ ସଙ୍ଗୀତରେ ବିଶାରଦ ପାଶ୍ କରି କାଳେ ପଳାଇ ଯିବେ ଓ ସଙ୍ଗୀତ-ଚର୍ଚ୍ଚା, ଆସର, ଆନନ୍ଦ ବନ୍ଦ ହୋଇଯିବ ଏହି ଭୟରେ ଉକ୍ତ ଅନୁଷ୍ଠାନ ମହାପାତ୍ରଙ୍କର ପରୀକ୍ଷା-କାଗଜପତ୍ର ପଠାଇଲେ ନାହିଁ । ତେଣୁ ମହାପାତ୍ରେ ସ୍ୱୀୟ ଚେଷ୍ଟାରେ ପ୍ରୟାଗ-ସଙ୍ଗୀତ-ସମିତି, ଏଲାହାବାଦରେ ଏକ ପରୀକ୍ଷା କେନ୍ଦ୍ର ଖୋଲି ତା'ର ବ୍ୟବସ୍ଥାପକ ହେଲେ ଓ ପରୀକ୍ଷା ମଧ୍ୟ ଦେଲେ । ସେତେବେଳେ ତାଙ୍କ ସହ ସର୍ବଶ୍ରୀ କାଶୀନାଥ ପୂଜାପଣ୍ଡା, ରମାରମଣ ପ୍ରତିହାରୀ, ନରସିଂହ ପଢ଼ିଆରୀ, କୃଷ୍ଣଚନ୍ଦ୍ର ଗୁରୁ ଓ ବୈଦ୍ୟନାଥ ଦାଶ ମଧ୍ୟ ପରୀକ୍ଷା ଦେଲେ ।

ଡାଃ ଅଦ୍ୱୈତଚରଣ ଦାସ ସୀତାବିବାହ ନାଟକ-ଶିଖରେ ଲକ୍ଷ୍ମଣ ଭୂମିକାରେ ଅଭିନୟ କରୁଥାନ୍ତି । ଖୁବ୍ ସ୍ନେହୀ ଓ ସ୍ୱାବଲମ୍ବନ-ଶୀଳ । ବ୍ୟକ୍ତିଗତ ଭାବେ ସେ ମହାପାତ୍ରଙ୍କର ବଳବତ୍ତର ଇଚ୍ଛାକୁ ରୂପାୟିତ କରିବା ପାଇଁ ପରୀକ୍ଷା କେନ୍ଦ୍ର ସ୍ଥାପନରେ ଯେଉଁ ଅଦମ୍ୟ ଚେଷ୍ଟା, ସାହାଯ୍ୟ ଓ ସହାନୁଭୂତି ଦେଖାଇଛନ୍ତି ତାହା ଜନ୍ମଜନ୍ମାନ୍ତରରେ ପରିଶୋଧ କରିହେବ ନାହିଁ ବୋଲି ଶ୍ରୀ ମହାପାତ୍ର ସ୍ୱୀକାର କରନ୍ତି ।

୧୯୫୮ରୁ ୧୯୬୨ ପର୍ଯ୍ୟନ୍ତ ଓଡ଼ିଶା ସଙ୍ଗୀତ ପରିଷଦ, ପୁରୀର ଅଧ୍ୟାପନା ଓ ଅଧ୍ୟକ୍ଷତା ଏବଂ ୧୯୬୨ରୁ ୧୯୮୭ ପାଖାପାଖି ୧୩ ବର୍ଷ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀଦ୍ୱାରା ପରିଚାଳିତ ଉତ୍କଳ ସଙ୍ଗୀତ ମହାବିଦ୍ୟାଳୟ, ଭୁବନେଶ୍ୱରରେ ଓଡ଼ିଶୀ ସଙ୍ଗୀତ ବିଭାଗରେ ଅଧ୍ୟାପନା କାର୍ଯ୍ୟ ସୁରୁରୁ ରୂପେ ନିର୍ବାହ କରି ଭୂୟସୀ ପ୍ରଶଂସା ଅର୍ଜନ କରିଥିଲେ ।

ଚାକିରୀରୁ ଅବସର ଗ୍ରହଣ କରିଥିଲେ ସୁଦ୍ଧା ସଙ୍ଗୀତ କ୍ଷେତ୍ରରେ ଆଦ୍ୟ-ପୁରୁଷ ଗାନ କରିବା ଅବସ୍ଥାରେ ଥିଲେ ।

ଅବସର ଗ୍ରହଣରେ ଅବ୍ୟବହିତ ପରେ ସାଙ୍ଗୀତିକ ଜୀବନ ଅବ୍ୟାହତ ରଖିବା ଉଦ୍ଦେଶ୍ୟରେ ସ୍ଥାନୀୟ କଳାପ୍ରେମୀଙ୍କ ଆଗ୍ରହ, ଆନ୍ତରିକତା, ଚେଷ୍ଟାରେ ଭଗବତୀ ସଙ୍ଗୀତ ମହାବିଦ୍ୟାଳୟ ନାମକ ଏକ ଅନୁଷ୍ଠାନ ପ୍ରତିଷ୍ଠା କରି ୧୯୮୦ ପର୍ଯ୍ୟନ୍ତ ତାହାର ଅଧ୍ୟକ୍ଷ ଭାବେ କାର୍ଯ୍ୟକରି ଆସୁଥିଲେ ।

୧୯୭୮ ମସିହାରୁ ଅଦ୍ୟାବଧି ପାଖାପାଖି ୩୮ ବର୍ଷ ହେଲା ଆକାଶବାଣୀ କଟକ କେନ୍ଦ୍ର ମାଧ୍ୟମରେ ଓଡ଼ିଶୀ, ଛାନ୍ଦ, ଚମ୍ପୂ, ଓଡ଼ିଶୀ ସଙ୍ଗୀତ ଶିକ୍ଷା କାର୍ଯ୍ୟକ୍ରମ ସମ୍ପାଦନ କରି ଆସୁଛନ୍ତି । ବେତାର ଯନ୍ତ୍ରରୁ ତାଙ୍କର କଣ୍ଠସ୍ୱର ଶୁଣିଲେ ମନେହୁଏ—ସେ ସ୍ୱରରେ ରକ୍ଷଣଶୀଳତାର ନିଛକ ଅନୁସନ୍ଧାନ, ସ୍ପଷ୍ଟ ଉଚ୍ଚାରଣ ଏବଂ ଗାୟନଶୈଳୀ ଏକ ସ୍ୱତନ୍ତ୍ର "ସରଗମ" ଉପରେ ପର୍ଯ୍ୟବସିତ । ଏହି "ସରଗମ" ଗୁରୁ ପୂଜ୍ୟ ସିଂହାରୀ ଶ୍ୟାମସୁନ୍ଦରଙ୍କ ଶୈଳୀପର ଜଣାପଡେ ।

**ଛାତ୍ରଛାତ୍ରୀ ଓ କୃତିତ୍ୱ**—ବିଶୁଦ୍ଧ ଓଡ଼ିଶୀ ଗାୟନ କରିବାରେ ତାଙ୍କର ପରାକାଷ୍ଠା ଆଜି ବି ସପ୍ତମ ଦଶକ (୭୦ ବର୍ଷରେ) ସ୍ପଷ୍ଟ ଜାଣିହୁଏ । ମୋର ମନେହୁଏ ଯେ ସେ ବୋଲିବି ବେଳେ ଶାସ୍ତ୍ରୀୟ ସ୍ତରର ଅନୁଶାସନକୁ ଧର୍ମୀୟ ଭାବେ ପାଳନ କରି ବୋଲନ୍ତି ।

ଜଣେ ପ୍ରତିଷ୍ଠିତ ସଙ୍ଗୀତଗୁରୁ ଭାବରେ ସେ ଓଡ଼ିଶାର ଧୂଳିକଣା ସହ ଓତଃପ୍ରୋତ ଭାବେ ଜଡ଼ିତ ଓ ପରିଚିତ । ସେ ଛାତ୍ରବତ୍ସଳ । ତାଙ୍କର କୃତୀ ଛାତ୍ରଛାତ୍ରୀ ଆଜି ଓଡ଼ିଶା, ଭାରତ ତଥା ଆନ୍ତର୍ଜାତିକ ସ୍ତରରେ ଖ୍ୟାତି-ଲାଭ କରି ସୁପ୍ରତିଷ୍ଠିତ ହୋଇଛନ୍ତି । ସେମାନଙ୍କ ମଧ୍ୟରେ ଶ୍ରୀ ପ୍ରଫୁଲ୍ଲ

କୁମାର କର ଗୀତକାର, ସଙ୍ଗୀତଜ୍ଞ ଓ ସଙ୍ଗୀତ ନିର୍ଦ୍ଦେଶକ । ଶ୍ରୀମତୀ ଶାନ୍ତିଲତା ବାରିକ ଜଣେ ସୁଗାୟିକା ଓ ଶ୍ରୀମତୀ ସୁଧା ମିଶ୍ର, କଟକ ଆକାଶବାଣୀ କେନ୍ଦ୍ରର ପ୍ରଯୋଜିକା । ସେମାନଙ୍କ ବ୍ୟତୀତ ବିଶ୍ୱନାଥ ପୂଜାପଣ୍ଡା, ଶ୍ରୀ ଗଙ୍ଗାଧର ଦାଶ, ଶ୍ରୀମତୀ ଲଳିତା ମହାନ୍ତି ଓ ବୃନ୍ଦାବନ ପୂଜାପଣ୍ଡା, ଅଲେଖ ଚନ୍ଦ୍ର ସାମଲ, ରାମହରି ଦାସ, ଘନଶ୍ୟାମ ପଣ୍ଡା, ଦିବାକର ମହାନ୍ତି ପ୍ରମୁଖ ଗୁରୁଗୁରୁଣୀ ବିଭିନ୍ନ ସଙ୍ଗୀତ ଅନୁଷ୍ଠାନରେ ଅଧ୍ୟାପନାରତ ।

**ବିଭିନ୍ନ କୃତିତ୍ୱ ଓ ସମ୍ମାନ**—ସଙ୍ଗୀତଗୁରୁ ମାର୍କଣ୍ଡେୟ ମହାପାତ୍ର ପ୍ରାଚୀନ କଳାକେନ୍ଦ୍ର ଚଣ୍ଡୀଗଡ଼ ବିଶ୍ୱବିଦ୍ୟାଳୟର ସ୍ଥାୟୀ ପ୍ରତିନିଧି, ପରୀକ୍ଷକ ଓ ପ୍ରଶ୍ନକର୍ତ୍ତା ଭାବେ କାର୍ଯ୍ୟକରି ଆସୁଛନ୍ତି ।

ଓଡ଼ିଶୀ-ସଙ୍ଗୀତ-ବିଶେଷଜ୍ଞ ଭାବେ ବିଭିନ୍ନ ସଙ୍ଗୀତ ଅନୁଷ୍ଠାନ ସେମାନଙ୍କର ଓଡ଼ିଶୀ ତଥା ସ୍ୱତନ୍ତ୍ର ସ୍ଥାୟୀ ସଙ୍ଗୀତ-ପରୀକ୍ଷକ ଭାବେ ନିମନ୍ତ୍ରଣ କରନ୍ତି ।

ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀର ଓଡ଼ିଶୀ ସଂଗୀତ ପଦ୍ଧତି ନିର୍ଦ୍ଧାରଣ ସମିତିର ସେ ଜଣେ ପୁରାତନ ସଭ୍ୟ ।

ଜଣେ ଖ୍ୟାତନାମା ଓଡ଼ିଶୀ ସଙ୍ଗୀତଜ୍ଞ ଭାବେ ଶ୍ରୀ ମହାପାତ୍ର ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ଦ୍ୱାରା ୧୯୮୦ ଡିସେମ୍ବର ୧୨ ତାରିଖରେ ପୁରସ୍କୃତ ତଥା ସମ୍ବର୍ଦ୍ଧିତ ହୋଇଛନ୍ତି ।

୧୯୮୩ରେ ସିଂହଦ୍ୱାର ଭଜନ ସମାରୋହରେ ଉତ୍କଳ କଳା ପ୍ରକାଶିକା ଦ୍ୱାରା "ସଂଗୀତ ଭାସ୍କର" ଉପାଧିରେ ଭୂଷିତ ହୋଇଛନ୍ତି ।

ଅଖିଳ ଭାରତ ଗାନ୍ଧର୍ବ ମହାବିଦ୍ୟାଳୟ ମଣ୍ଡଳ ପୁନା, ପ୍ରୟାଗ ସଂଗୀତ ସମିତି ଆଲ୍ଲାହାବାଦ, ପ୍ରାଚୀନ କଳାକେନ୍ଦ୍ର, ଚଣ୍ଡୀଗଡ଼ ଓଡ଼ିଶା ମାଧ୍ୟମିକ ଶିକ୍ଷା ପରିଷଦ, ଉଚ୍ଚ ମାଧ୍ୟମିକ ଶିକ୍ଷା ପରିଷଦ ତଥା ଉତ୍କଳ ବିଶ୍ୱ- ବିଦ୍ୟାଳୟର ସଂଗୀତ ପାଠ୍ୟକ୍ରମ ପ୍ରସ୍ତୁତକରଣ, ପ୍ରଶ୍ନକର୍ତ୍ତା ଏବଂ ପରୀକ୍ଷକ ଭାବେ କାର୍ଯ୍ୟ ସମ୍ପାଦନ କରି ଆସୁଛନ୍ତି ।

୮-୫-୮୩ରେ କଟକ ଉପଗ୍ରହ ଦୂରଦର୍ଶନ କେନ୍ଦ୍ରରେ "ଓଡ଼ିଆ ସାଂସ୍କୃତିକ ଜୀବନରେ ଓଡ଼ିଶୀ ସଂଗୀତ" ଶୀର୍ଷକ ଉପରେ ଆଲୋକ-

ପାରଦର୍ଶିତା ବିଭିନ୍ନ ଓଡ଼ିଶୀ ସଂଗୀତ ଗାୟନ କରି ଉଚ୍ଚ ପ୍ରଶଂସିତ ହୋଇ ପାରିଛନ୍ତି ।

୧୯୮୪ରେ ଗୁରୁ ସିଂହାରୀ ଶ୍ୟାମସୁନ୍ଦର କରଙ୍କ ଦ୍ୱାରା ସ୍ଥାପିତ "ସିଂହାରୀ ଶ୍ୟାମସୁନ୍ଦର ସଂଗୀତ ମହାବିଦ୍ୟାଳୟ"ରେ ଅଧ୍ୟକ୍ଷତା କରିଥିଲେ ।

ତା ୨୪ । ୯ । ୮୪ ରିଖରେ କଟକ ଆକାଶବାଣୀର ପ୍ରାଥମିକ ବିଦ୍ୟାଳୟ ଶିକ୍ଷା କାର୍ଯ୍ୟକ୍ରମରେ 'ହାର୍‌ମୋନିୟମ୍' ଉପରେ ଏକ ରୂପକ-ଭାଷଣ ପ୍ରଦାନ କରିଛନ୍ତି ।

ଓଡ଼ିଶୀ କଳା ଓ ସାଂସ୍କୃତିକ କ୍ଷେତ୍ରରେ ବିଶେଷ ଅବଦାନ ପାଇଁ ୧୯୮୦ ମସିହାଠାରୁ ଓଡ଼ିଶା ସରକାରଙ୍କ ଦ୍ୱାରା ଯାବଜ୍ଜୀବନ ମାସିକ ଟ୨୦୦-ଟ୬୦୦ ହାରରେ ସମ୍ମାନଜନକ ଭତ୍ତା ପାଉଥାନ୍ତି ।

ଅଧୁନା କେନ୍ଦ୍ରୀୟ ସିଂହାରୀ ଶ୍ୟାମସୁନ୍ଦର ସ୍ମୃତି ସଂସଦ ତଥା ଉତ୍କଳ ଶାସ୍ତ୍ରୀୟ ସଂଗୀତ ମଣ୍ଡଳ, ପୁରୀର ସଭାପତି କାର୍ଯ୍ୟ ବହନ କରି ଓଡ଼ିଶୀ ସଂଗୀତର ପ୍ରଚାର, ପ୍ରସାର ତଥା ବିକାଶ କାର୍ଯ୍ୟ ଅବସରରେ ପାରଳାଖେମୁଣ୍ଡି ଭକ୍ତିସଂଗୀତ ସଂସଦ ଓ ରାଉରକେଲା ସାଂସ୍କୃତିକ ସମନ୍ୱୟ ସମିତି ଦ୍ୱାରା ମାନପତ୍ର ଓ ଉପାୟନ ସହ ସମ୍ମାନିତ ହୋଇଛନ୍ତି ।

**ମୁଁ ଯେପରି ତାଙ୍କୁ ଜାଣେ**—ସଙ୍ଗୀତର ମୂର୍ଦ୍ଧନ୍ୟ ଶିଳ୍ପୀ ଗୁରୁ ପଣ୍ଡିତ ମାର୍କଣ୍ଡେୟ ମହାପାତ୍ରଙ୍କ ପ୍ରତ୍ୟକ୍ଷ ସମ୍ପର୍କରେ ଆସିବାର ସୁଯୋଗ ଲଭ କଲି ୧୯୬୪-୬୫ ମସିହାରେ । ମୋ ପିତା ୰ ଗଙ୍ଗାଧର ମହାପାତ୍ର ଅଲିଆସ ଗଙ୍ଗାଧର ମାଷ୍ଟର ଆକାଶବାଣୀ, କଟକ କେନ୍ଦ୍ରର ଜଣେ ସ୍ୱୀକୃତିପ୍ରାପ୍ତ ଗୀତିକାର । ମାର୍କଣ୍ଡବାବୁ ପିତାଙ୍କୁ ସମ୍ମାନସୂଚକ 'ଭାଇନା' ସମ୍ବୋଧନ କରନ୍ତି । ମାର୍କଣ୍ଡବାବୁଙ୍କ ଆଗ୍ରହ ଅନୁସାରେ କେତୋଟି ଗୀତ ନେଇ ପହଞ୍ଚିଲି ତାଙ୍କ ପାଖରେ । ମୋ ସୁଲଭ ଚପଳତା ତାଙ୍କର ତେଜୋଦୀପ୍ତ ମୁଖମଣ୍ଡଳରେ ଫୁଟିଉଠୁଥିବା ଗାମ୍ଭୀର୍ଯ୍ୟ ପୂର୍ଣ୍ଣ ସ୍ନେହସିକ୍ତ ଦୃଷ୍ଟିପାତଦ୍ୱାରା ସ୍ତିମିତ ହୋଇଗଲା ।

ପ୍ରଣାମ ଜ୍ଞାପନ ପୂର୍ବକ ବଢ଼ାଇ ଦେଲି ଗୀତ-କାଗଜଟିକ । ଧୀର ସ୍ୱରରେ କହିଲେ 'କଣ ହେଲ' ? ଓହୋ ତମେ ତାହାହେଲେ ଗଙ୍ଗାଭାଇନାଙ୍କ ପୁଅ ?'

ମୁଁ କହିଲି 'ଅଜ୍ଞା'-ବାସ୍ ସେତିକ ।

**ସ୍ୱଭାବ ଓ ଗତି**—ସେ ଜଣେ ଅମାୟିକ, ମେଳାପୀ ଓ ସଚ୍ଚୋଟ ବ୍ୟକ୍ତି । କୌଣସି ସାଂସ୍କୃତିକ କାର୍ଯ୍ୟକ୍ରମ ପାଇଁ ଅନୁରୋଧ ସେ ରକ୍ଷା କରନ୍ତି । କିନ୍ତୁ ମନ ଓ ମୁନ ଥରେ ଭାଙ୍ଗିଗଲେ ଆଉ କିଛି ହୁଏନା । ବ୍ୟବହାରଗତ ତ୍ରୁଟି ପାଇଁ ସେ କେହି ହେଲେ ବି କ୍ଷୁବ୍ଧ ହେବ । ତେଣୁ ତାଙ୍କ ପକ୍ଷରେ ଅଭିମାନ କରିବା ଠିକ୍ ନୁହେଁ । ସେ କହନ୍ତି 'ବଡଲୋକ ପାଇଁ ଦରିଦ୍ରତା ?' ଏଥିରୁ ବେଶ ବୁଝାପଡ଼େ ।

ଭୋଜି, ଭାତ, ଆସର ପାଇଁ ସତେ ଯେପରି ସେ ଅପେକ୍ଷ-ମାଣ ତା ନ ହେଲେ ସରକାରୀ ଚାକିରୀ ପ୍ରଲୋଭନ ସେ ଛାଡ଼ି ନ ଥାନ୍ତେ ?

ମୁଁ ଯାହା ଉପଲବ୍ଧି କରିଛି ସେ ସଙ୍ଗଠନ କରିବାରେ ଖୁବ୍ ଅଗ୍ରଣୀ । ତାଙ୍କ ମନରେ ଅବଶୋଷ ଯେ ପ୍ରତ୍ୟେକ ସଂଗଠନ ପାଇଁ ଜଣେ ପ୍ରକୃତ ଦାୟାଦ ଆବଶ୍ୟକ ଯେ କି ପୂର୍ଣ୍ଣପ୍ରାଣରେ ସାହାଯ୍ୟ କରି ସଙ୍ଗଠନକୁ ବଞ୍ଚାଇ ରଖିବ ।

ସେ ନିଜେ ହିଁ ଏକ ଅନୁଷ୍ଠାନ କାରଣ, ଦୀର୍ଘ ୫୦ ବର୍ଷରୁ ଊର୍ଦ୍ଧ୍ୱ ସଂଗୀତ କ୍ଷେତ୍ରରେ ରହି ସଂଗୀତର ଇତିବୃତ୍ତି ସହ ସେ ଓତଃପ୍ରୋତ ଭାବେ ଜଡ଼ିତ । ତେଣୁ ତାଙ୍କୁ 'ଅର୍ଦ୍ଧ ଶତାବ୍ଦୀର କର୍ଣ୍ଣଧାର' କହିଲେ ଅତ୍ୟୁକ୍ତି ହେବନାହିଁ ।

ପରିଣତ ବୟସରେ ରାତି ୧୨ଟା, ଗୋଟାଏ ପର୍ଯ୍ୟନ୍ତ ସଂଗୀତ ଚର୍ଚ୍ଚା, ଆସର, ଆଲୋଚନା କରୁଥାନ୍ତି । କ୍ୟାବିନ ଦୋକାନ ପଟାରେ ସଂଗୀତର ରାଗ ରାଗିଣୀର ମୂର୍ଚ୍ଛନା, ଆଲୋଚନା ଚାଲିଥାଏ । କୌଣସି କୌଣସି କାର୍ଯ୍ୟବଶତଃ ମୁଁ ଫେରୁଥିଲେ ସ୍ୱତଃ ସାଇକେଲରୁ ଓହ୍ଲାଇ ଅଟକିଯାଏ ।

ସେ ପଚ୍ଛରନ୍ତି 'କଣ ମହାପାଡ଼େ ?' ତାପରେ କଥାବାର୍ତ୍ତା ଜମିଗଲା ବେଳକୁ ମୁଁ ଦେଖେ ଯେ ରାତି ପାହିଗିବ । ତେଣେ ତେଲ୍ଲୁଣ ସପାର ବାନା ଖାଇଥାଡ଼ ହୋଇଗିବ ।

'ଆଜ୍ଞା ଆସୁଛି' କହି ଉପଭଙ୍ଗ, ସ୍ୱରଭଙ୍ଗ, ପ୍ରାସଙ୍ଗିକତା ଭଙ୍ଗ କରି ଫେରେ । ତାଙ୍କ ସହିତ ୪।୫ ଜଣ କଣ୍ଟିତ ଥାନ୍ତି ।

ଓଡ଼ିଶୀ ସଙ୍ଗୀତକୁ ଶାସ୍ତ୍ରୀୟତା କରିବା, ଓଡ଼ିଶୀ ପାଠ୍ୟକ୍ରମର ଏକ ସୁଚିନ୍ତିତ ପାଠ୍ୟଖସଡ଼ା (ସିଲବସ) ନିର୍ଦ୍ଧାରଣ କରିବା, ଓଡ଼ିଶୀ ସଙ୍ଗୀତର ପ୍ରଚ୍ଛର, ପ୍ରସାର ଦିଗରେ ଆମ୍ଭ ଉତ୍ସର୍ଗ ଉଦ୍ଦେଶ୍ୟରେ 'ଉତ୍କଳ ଶାସ୍ତ୍ରୀୟ ସଙ୍ଗୀତ ମଣ୍ଡଳ' ନାମକ ଏକ ସଂସ୍ଥା ଗଠନ କଲେ ।

ମୁଁ ଗୀତ ସହ ସମ୍ପୃକ୍ତ ଥିଲି । କିନ୍ତୁ ସଙ୍ଗୀତ ଓ ସଂଗଠନ ସହ ସମ୍ପୃକ୍ତ ହେବାରେ ମାର୍କଣ୍ଡେୟ ମହାପାତ୍ରଙ୍କର ପ୍ରଥମ ପ୍ରେରଣା ପାଇଁ ମୁଁ ତାଙ୍କଠାରେ ଋଣୀ ।

ସେ ଜଣେ ଗୁଣଗ୍ରାହୀ ବ୍ୟକ୍ତି ଅର୍ଥାତ୍ 'ତହ୍ବଗ ଗରାଳ୍' । ଉତ୍କଳ ଶାସ୍ତ୍ରୀୟ ସଙ୍ଗୀତ ମଣ୍ଡଳର ଦାୟିତ୍ୱ ନେବାକୁ କହିଲେ । ଆନନ୍ଦ, ଆଗ୍ରହ, ଆନ୍ତରିକତା ତଥା ପୂଜ୍ୟପୂଜା କ୍ରମରେ ରାଜି ହେଲି । ହେଲେ କାର୍ଯ୍ୟ ପରି-ସରରେ ଅଗ୍ରସର ହେବାକୁ ବାଜମାରିବାରେ ହାରିଲେ । ଉଦ୍ୟାବଧି ଅଛି ସହ-ସମ୍ପାଦକ ଭାବେ ।

ତାପରେ ସାଂଗଠନିକ କାର୍ଯ୍ୟର ଶୃଙ୍ଖଳା ଦୃଷ୍ଟିରୁ ପୁଷ୍ପହରର ଏକ ପ୍ରାଚୀନ ସଂଗୀତ, ନୃତ୍ୟ, ନାଟକର ପ୍ରତିଷ୍ଠିତ ଅନୁଷ୍ଠାନ 'ସଙ୍ଗୀତ କଳା ପ୍ରତିଷ୍ଠାନ'ର ଯୁଗ୍ମ ସମ୍ପାଦକ ଭାବେ ଦାୟିତ୍ୱ ନେବାକୁ ହେଲା ।

ମାର୍କଣ୍ଡବାବୁଙ୍କର ସଙ୍ଗୀତ କଳା ପ୍ରତିଷ୍ଠାନ ପ୍ରତି ଆନୁଗତ୍ୟ, ଅବଦାନ ପ୍ରଣିଧାନଯୋଗ୍ୟ । ଏହି ଅନୁଷ୍ଠାନର ପ୍ରତ୍ୟେକ ସାଂସ୍କୃତିକ କାର୍ଯ୍ୟକ୍ରମରେ ସେ ମହାଶୟ ଦୁଃଖ ସୁଖରେ ଆମ ସହ ସାମିଲ ହେବା ଗୌରବର ବିଷୟ ।

ଅନୁଷ୍ଠାନର ବାର୍ଷିକ ଉତ୍ସବର ସଙ୍ଗୀତ ବିଚାର ପରିଚ୍ଛଳନା ଶ୍ରୀଜଗନ୍ନାଥଙ୍କ ଅନବସର (ଅଣସର) ସମୟରେ ଅଲାରନାଥଙ୍କ-ଠାରେ ଭଜନ ସମାରୋହ ତଥା ବକ୍ସି ଜଗବନ୍ଧୁ ବିଦ୍ୟାଧରଙ୍କ ଜନ୍ମସ୍ଥାନ

ଐତିହାସିକ ଚଉରେଙ୍ଗଠାରେ ପ୍ରତିଷ୍ଠିତ ଏହି ଅନୁଷ୍ଠାନର ଏକ ଶାଖା ଅନୁଷ୍ଠାନ ଉତ୍ସବରେ ଅଧ୍ୟକ୍ଷତା ତଥା ଅଂଶ ଗ୍ରହଣ କରିବା, ଜଗନ୍ନାଥରେ ବଜେ ଶ୍ରୀ ଠାକୁରଙ୍କ ପବିତ୍ର 'ସୁନାବେଶ' ଦିନ ଭଜନ ସମାରୋହରେ ସଂଗୀତର ଭକ୍ତିଅର୍ଘ୍ୟ ଅର୍ପଣ କରିବା, ପୁରୀର ଶ୍ରୀକ୍ଷେତ୍ର କଳା ପ୍ରକାଶିକା ତଥା ଶ୍ରୀକ୍ଷେତ୍ର କଳା ସାଂସ୍କୃତିକ ସଂସଦର ପବିତ୍ର ଦେବଦୀପାବଳିରେ ଭଜନ ପରିବେଷଣ କରିବା କାର୍ଯ୍ୟ, ସ୍ମୃତି ଜୀବନରେ ଭୁଲିହେବ ନାହିଁ ।

ତା ୧-୬-୧୯୮୫ରିଖ ଗ୍ରୀଷ୍ମାବକାଶ ଠା. ପୁରିଣୀପୁ ସଂଗୀତ କଳା ପ୍ରତିଷ୍ଠାନର ଇତିହାସରେ । ଗୁରୁ ମହାପାତ୍ରଙ୍କ ବୌଦ୍ଧିକ ପରିକଳ୍ପନାକୁ ବର୍ଣ୍ଣାଢ୍ୟ ରୂପ ଦେବାକୁ ଆଗେଇ ଆସିଲେ ଜଣେ ବଳିଷ୍ଠ ସଂଗଠକ ଶ୍ରୀ ଦେବଦତ୍ତ ସାମନ୍ତସିଂହାର ।

ସଂଗୀତର ପ୍ରୟୋଗାତ୍ମକ କ୍ଷେତ୍ରରେ ଏକ ଅଭିନବ ଚେତନା ସମ୍ବଳିତ ପ୍ରକଳ୍ପ । ଓଡ଼ିଶୀ ସଂଗୀତର କର୍ମଶାଳା ।

ଓଡ଼ିଶୀ ସଂଗୀତ ବୋଲାଯାଉଥିଲା, ଯାଉଅଛି ଏବଂ ଯାଉଥିବ ପଥ । 'ଯୁଗକୁ ଯୁଗ ଏହିମତେ, ଉଦ୍ଧବ ବୁଝିବୁ କେମନ୍ତେ' । ହେଲେ ଓଡ଼ିଶୀ-ଗାନ-ପଦ୍ଧତିରେ ଗୁଣାତ୍ମକ ବିକାଶ ଓ ପ୍ରୟୋଗାତ୍ମକ ମୂଲ୍ୟବୋଧ ଦରକାର ।

ଏହି କର୍ମଶାଳାର ଦାୟିତ୍ୱ ବହନ କଲେ ୭୦ବର୍ଷ ବୟସ୍କ ଗୁରୁ ମାର୍କଣ୍ଡେୟ ମହାପାତ୍ର ।

ପୂର୍ଣ୍ଣ ୧ମାସଧରି ପ୍ରତ୍ୟହ ସକାଳେ ଦେଢ଼ଘଣ୍ଟା ଓ ସନ୍ଧ୍ୟାରେ ୨ଘଣ୍ଟା ଓଡ଼ିଶୀର ତଥ୍ୟାତ୍ମକ ଓ ପ୍ରୟୋଗାତ୍ମକ ପ୍ରଶିକ୍ଷଣ ଅବ୍ୟାହତ ରଖି ପାରିଥିଲେ ଶ୍ରୀ ମହାପାତ୍ର ତାଙ୍କର ବିଭିନ୍ନ ଅସୁବିଧା, ଅସୁସ୍ଥତା ସତ୍ତ୍ୱେ । ସଂଗୀତ-ସେବା କଣ ଏଥିରୁ ହିଁ ପରିସ୍ଫୁଟ ।

ସଙ୍ଗୀତ ଗୁରୁ ମହାପାତ୍ର ପ୍ରକୃତରେ ସଂଗୀତପ୍ରେମୀ ସଂଗୀତ ଶିକ୍ଷା ଦାନ ବ୍ୟତୀତ ବିଭିନ୍ନ ସଂଗୀତ-ଆସର, ସଭା, ସମ୍ବର୍ଦ୍ଧନାରେ ନିଜକୁ ହଜାଇ ଦେବା ତାଙ୍କର ଅନ୍ୟତମ ସଦ୍‌ଗୁଣ ।

ଚଉଡ଼ାଜିଲ୍ଲର ସତ୍ସଂଗ ଭବନ (ମରିଚ କୋଟ) ଅନ୍ନପୂର୍ଣ୍ଣା (କ) ରଂଗମଞ୍ଚ, ସଂଗୀତ ଅନୁଷ୍ଠାନ, ଟାଉନହଲ ବା ସମୁଦ୍ରକୂଳସ୍ଥ ବ୍ୟାୟାମ

ଭବନ ହେଉ ପଦବ୍ରଜରେ ଯିବେ । ଆମେ ଆଦୌ ନ ଗ୍ଭଲିବା ଲୋକ କାର୍ତ୍ତନ ପିକ୍‌ଚର (ବାଂଗଳ୍ପବ)ର ମାଣ୍ଡଥନ ଦୌଡ଼ିଲ୍ଲ ପରି ଅନୁଭବ କରୁ ।

ବରକ୍ତ ହେଲେ ପ୍ରତ୍ୟୁତ୍ତରରେ ଗୋଟାଏ ଦୀର୍ଘ ହସ ହସି କହନ୍ତି "ଗ୍ଭଲ ଗ୍ଭଲଗଲେ ସଙ୍ଗୀତ ଚର୍ଚ୍ଚା ହେବ । ଜୀବନର ଅଧିକାଂଶ ସମୟ ତ ସଂସାର ଜଞ୍ଜାଳରେ ଗଲ୍ଲ ।"

ସଙ୍ଗୀତାକାଶରେ ଉଜ୍ଜ୍ୱଳ ଜ୍ୟୋତିଷ୍କମାନଙ୍କର ସାମାନ୍ୟତମ ଆଲୋକ ଲଭ କରିବାର ସୁଯୋଗ କେବେ ହରାଇବାକୁ ଗ୍ଭହାନ୍ତି ନାହିଁ । ପଣ୍ଡିତ କାଶୀନାଥ, ଶ୍ରୀକାନ୍ତ ବାକ୍‌ରେ, ଶଙ୍କରଘୋଷ, ମାଳବିକା କାନନ, ଶଙ୍କର ବୋଡ଼ସ୍, କୁମାର ଗନ୍ଧର୍ବ, ଏ. କେ. ଆଙ୍ଗ୍‌ଲେଙ୍କୁ ସମ୍ବର୍ଦ୍ଧନା ଜ୍ଞାପନ କରିଛନ୍ତି ଏବଂ ଶ୍ରୀମତୀ ସରସ୍ୱତୀ ରାଣେ, ପଣ୍ଡିତ ଜ୍ଞାନପ୍ରକାଶ ଘୋଷ, କୁଣ୍ଡଳା ଆଦିନାରାୟଣ, ଶ୍ରୀ କ୍ଷେତ୍ରମୋହନ କର ପ୍ରମୁଖ ସଙ୍ଗୀତଜ୍ଞଙ୍କ ସହ ଓଡ଼ିଶୀ, ହିନ୍ଦୁସ୍ଥାନୀ କଣ୍ଠ ସଙ୍ଗୀତ ଗାୟନକର ପ୍ରଶଂସାର୍ହ ହୋଇ-ପାରିଛନ୍ତି ।

ବର୍ତ୍ତମାନ ୭୦ ବର୍ଷ ବୟସ୍କ ଶ୍ରୀ ମହାପାତ୍ରଙ୍କୁ ଦେଖିଲେ ଜଣାପଡ଼େ ଖୁବ୍ ନିକଟରେ ସରକାରୀ ଚାକିରୀରୁ ଅବସର ଗ୍ରହଣ କରିଛନ୍ତି । କେନ୍ଦ୍ର ସାଂସ୍କୃତିକ ବିଭାଗ ଦ୍ୱାରା ଦୁଇଜଣ କଣ୍ଠଶିଳ୍ପୀ ଚନ୍ଦ୍ରମଣି ଲେଙ୍କା ଓ ଜ୍ୟୋତ୍ସ୍ନା ଦାସ (ବେଚାରଶିଳ୍ପୀ) ବୃତ୍ତିଲାଭକରି ଶ୍ରୀ ମହାପାତ୍ରଙ୍କ ତତ୍ତ୍ୱାବଧାନ ଓ ପ୍ରଶିକ୍ଷଣରେ ଓଡ଼ିଶୀ କଣ୍ଠ ସଙ୍ଗୀତରେ ଗବେଷଣା କରୁଅଛନ୍ତି ।

**ଗାୟନ ଶୈଳୀ** :—ଶ୍ରୀ ମହାପାତ୍ର ଗାଇଲାବେଳେ ବିଶେଷତଃ ଓଡ଼ିଶୀ ଗାୟନ ବେଳେ ଗୀତର ଭାବ, ଭାଷା ସହ ତନ୍ମୟ ହୋଇଯାନ୍ତି । ପ୍ରାୟ ପୋଖତ ଶିଳ୍ପୀମାନଙ୍କର ଏହି ଭାବ ପରିଲକ୍ଷିତ ହୁଏ । ତାଙ୍କର ଗାୟନ ଶୈଳୀ ତାଙ୍କର ଗୁରୁ ସିଂହାରୀ ଶ୍ୟାମସୁନ୍ଦର କରଙ୍କର ଗୁରୁ-ପରମ୍ପରାପର ପ୍ରଶସ୍ତିମାନ ହୁଏ । ତାଙ୍କ ଗାୟନରେ ଆଧୁନିକତାର ସ୍ପର୍ଶ ନାହିଁ । ତାଙ୍କର ପ୍ରିୟ ଗୀତ ହେଲ :—

**ଓଡ଼ିଶୀ** :—୧ । (ଚନ୍ଦ୍ରକାନ୍ତ) ଆଜ ଏ କ ଗୁମାନରେ, ଚନ୍ଦ୍ରାନନା ।

୨ । (ମୁଖାରୀ) ସରସ ସେତିକ ବନ୍ଧୁ ନିରସ ତେତିକ ।

୩ । (କାମୋଦୀ) ମୀନ ନୟନା ଷୀଣ ହେବଣି ମୋ ଧନୀ

୪ । (ବଳହଂସ) ଗଜାନନ ଗଣପତି ଗୌରୀ ନନ୍ଦନ ।
୫ । (ଶଙ୍କର ଭରଣ) ବଞ୍ଚିବ କେଉଁରେ

**ଛାନ୍ଦ** :—୧ । (ରାମ କେରୀ) ପ୍ରାଣପ୍ରିୟା କଷ୍ଟ ଶୁଣି, ହନୁମୁଖୁ ରଘୁମଣି ।
୨ । (ରାମକେରୀ) ପ୍ରଣୟରେ ଦୁଃଖୀ ହୋଇ ପଦ୍ମଲୋଚନୀ ।
୩ । (ଆଷାଢ ଶୁକ୍ଳ) ପିନ୍ଧିଛି କୁସୁମ ସବୁରେ ବେଣୀ ।
୪ । (କଳହଂସ କେଦାର) ବିଜୟା ଯାମିନୀରେ ମୋ ପ୍ରାଣ ଯିବ ।

**ଭଜନ** :—୧ । ଯାଜ ଆଉଁସାଣ ହେ ନାରାୟଣ ।
୨ । ଏବେ ଗୁନ୍ଥିଛି ମୁଁ ଦୁଃଖ ଭଜନମାଳ, ଗଳେ ଦେବ ଚକାଡୋଳା ।
୩ । ଭଜମନ ବ୍ରଜବନ ବିଜରାଜଙ୍କୁ ।

ପଣ୍ଡିତ ମାର୍କଣ୍ଡଙ୍କର ରୁଚି ରକ୍ଷଣଶୀଳ ହେଲେ ମଧ୍ୟ, ଆଧୁନିକତାର ସ୍ବକୀୟତା ମଧ୍ୟରେ ସଂରକ୍ଷଣଶୀଳତା ବେଶ୍ ଦ୍ୟୋତକ ।

ଦିନ-ଚର୍ଯ୍ୟା ତାଙ୍କର ସ୍ୱାସ୍ଥ୍ୟ-ସମ୍ପଦର କାରଣ । ନିୟମିତତା, ନିଷ୍ଠା ଏହାର ସହାୟକ । ସ୍ନାନ ପୂର୍ବରୁ ତୈଳ ମର୍ଦ୍ଦନ ଏକ ପର୍ଯ୍ୟାୟ । ସେ ସମୟରେ ଏବଂ ଖାଇସାରି ବିଶ୍ରାମ ପରେ ସାକ୍ଷାତକାର ସମୟ ପ୍ରଶସ୍ତ ।

ଘରର ଏକ ସ୍ୱତନ୍ତ୍ର କକ୍ଷ ମଧ୍ୟରେ ତାଙ୍କର ସଙ୍ଗୀତ-ବାଦ୍ୟଯନ୍ତ୍ର ହାରମୋନିୟମ, ତବଲା ସଂରକ୍ଷିତ । ଶ୍ରୀହନୁମାନ ଓ ଶ୍ରୀଗଣେଶଙ୍କ ଫଟୋ ପୂଜିତ । ଅତିଥି ଅଭ୍ୟାଗତ କେହି ଖାଲିରେ ଫେରନ୍ତି ନାହିଁ । ହାତଭଙ୍ଗା ବସ୍ତ୍ରେଇ ଫାଳ ଗୁଆ ଦିଆଯାଇଥିବା ପାନ ଓ ଗୁ ଯେତେ ଉପଭୋଗ୍ୟ ନୁହେଁ ତାଙ୍କ ସହ ଆଳାପ, ସଂଳାପ, ବିଳାପ ତା'ଠାରୁ ଅଧିକ ଉପଭୋଗ୍ୟ ହୁଏ ।

କ୍ରୋଧର ବଶବର୍ତ୍ତୀ ହେଲେ ସେ ନୀରବ ରହନ୍ତି । ଫଳରେ କେହି କେବେ ଶିରବ୍ୟ ହେବାର ମୁଁ ଲକ୍ଷ୍ୟ କରିନାହିଁ । ନାତି, ନାତୁଣୀଙ୍କ ସଙ୍ଗେ ସେ ମଧ୍ୟ ପିଲା ହୋଇଯାନ୍ତି । "ବାଘର ଘରେ ମିରଗର ନାଟ"ପରି ପିଲାମାନେ ଆସି ଅଜା; ବାପାଙ୍କର ଝିସ୍କୁଟ୍, କମଳା କାଭିୟରେ ଖାଆନ୍ତି ।

**ଉପସଂହାର** :—ଶ୍ରୀ ମାର୍କଣ୍ଡେୟ ମହାପାତ୍ରଙ୍କର ସମୟ ଓ ଶ୍ରମ ସ୍ୱୀକାର ଏହି ଶେଷ ପର୍ଯ୍ୟାୟରେ ପହଞ୍ଚାଇ ପାରିଛି ବୋଲି ମୋର ଦୃଢ଼ ବିଶ୍ୱାସ ।

ପୂଜ୍ୟପୂଜାର ଆଦର୍ଶକୁ ନେଇ ପଣ୍ଡିତ ମହାପାତ୍ର ଗୁରୁ ୯ ସିଂହାଙ୍କ ଶ୍ୟାମସୁନ୍ଦର କଳ ରାଜ୍ୟସ୍ତରୀୟ ନୃତ୍ୟ ସମିତିର ସଭାପତି ଭାବେ ପଣ୍ଡିତ, ସଙ୍ଗୀତଜ୍ଞ, କଳାକାର, ଜ୍ଞାନୀ ଗୁଣୀଙ୍କୁ ସମ୍ମାନ ପ୍ରଦର୍ଶନ କରି ଆସୁଛନ୍ତି ।

ସେ କୁହନ୍ତି ପୂଜା କର; ପୂଜିତ ହେବ ।

ହେ ପ୍ରଭୁ !

ଆପଣହିଁ ସର୍ବମୟ କର୍ତ୍ତା ।

ଶ୍ରୀ ମହାପାତ୍ରଙ୍କପରି ଗୁଣୀଗଣ ଭାରତୀୟ ଗୁରୁସ୍ଥାନୀୟ ବ୍ୟକ୍ତିମାନଙ୍କୁ ଦୀର୍ଘାୟୁ କରନ୍ତୁ ଏବଂ କଳାର ପ୍ରଚୁର ପ୍ରସାର ଜଗତରେ ସେମାନଙ୍କର ଜୀବନ ଉତ୍ସର୍ଗିତ ହେବାକୁ ଶକ୍ତି ସାମର୍ଥ୍ୟ ଓ ସୁସ୍ଥତା ଦିଅନ୍ତୁ—ଏତିକି ଏ ଅଧମ ଲେଖକର ଆପଣଙ୍କର ଶ୍ରୀଚରଣାରବିନ୍ଦରେ ବିନମ୍ର ପ୍ରଣତି ।

ଓଁ ତତ୍‌ସତ୍ ।

## ଅଚ୍ୟୁତ ଗୋତ୍ରୀୟ

## ଶ୍ରୀ ମହାପାତ୍ରଙ୍କ ବଂଶଲତା

(ପ୍ରପିତାମହ) ବାଞ୍ଛାନିଧି
|
(ପିତାମହ) ଜଗନ୍ନାଥ
|
(ପିତୃ) ନାରାୟଣ (ଅଗାଧୁ)
|
——————— ମାର୍କଣ୍ଡେୟ ——————— ହାରମଣି (ସ୍ତ୍ରୀ)
| |
(କନ୍ୟା) ଶାନ୍ତିଲତା (ପୁତ୍ର) କୃଷ୍ଣଚନ୍ଦ୍ର ——— ରେଣୁବାଳା (ପୁତ୍ରବଧୂ)
|
———————————
ଜାମାତା | | |
ଶ୍ରୀ ଚନ୍ଦ୍ରଶେଖର ମିଶ୍ର

ଶ୍ରୀ ମାର୍କଣ୍ଡେୟ ପୃଷ୍ଟିକଲ ଗାର ନରସିଂହପୁରବାସୀ ନୈଷ୍ଠିକ ଶାସନ ବ୍ରାହ୍ମଣ ୬ ବାଇଧର ମହାପାତ୍ରଙ୍କ କନ୍ୟା ହୀରାମଣିଙ୍କୁ ବିବାହ କରିଥିଲେ । ତାଙ୍କ ସହଧର୍ମିଣୀ ପତିପରାୟଣା, ସ୍ନେହୀ, ମେଳାପୀ, ଧର୍ମ-ପରାୟଣା, ଗୃହକର୍ମ କୁଶଳା ।

ଏକମାତ୍ର ପୁତ୍ର କୃଷ୍ଣଚନ୍ଦ୍ର (ବନୁ) D. A. G. ଅଫିସର ଅଡ଼ିଟର ଭାବେ କାର୍ଯ୍ୟ କରୁଛନ୍ତି । ପିତୃଦତ୍ତ କଳା—ସଙ୍ଗୀତକୁ ପୂତ୍ର ପାଥେୟ ନ କରିଥିଲେ ସୁଦ୍ଧା ଘରେ ଜଣେ ନୀରବ ସାଧକ ଭାବେ ଗାୟନ, ବାଦନ କରନ୍ତି ।

୧୨।୧୩ବର୍ଷ ବୟସ୍କ ପୌତ୍ର (ନାତି)ର ଅକାଳ ବିୟୋଗ ଶ୍ରୀ ମହାପାତ୍ରଙ୍କ ମନରେ ଘୋର ଆଘାତ ଦେଇଛି । ସେ ସମୟେ ସମୟେ କହନ୍ତି—

"ସବୁ ସେଇ ପ୍ରଭୁଙ୍କ ଇଚ୍ଛା, ମଣିଷ କ'ଣ କରିବ ?"



# ସେବକ ଶ୍ୟାମସୁନ୍ଦର

**ଶ୍ରୀ ପ୍ୟାରମୋହନ ମହାନ୍ତି**

ସଂସାରରେ ମନୁଷ୍ୟ ପାଇଁ ଦୁଇଟି ପଥ ବର୍ତ୍ତମାନ । ଗୋଟିଏ ହେଲା ଶ୍ରେୟ, ଅନ୍ୟଟି ପ୍ରେୟ । ପ୍ରେୟ ଭୋଗ ପଥ; ଶ୍ରେୟ, ସେବା, ତ୍ୟାଗ, ମାନବିକତାର ପଥ । ଗୋଟିଏ ସହଜ ଆଉ ସରଳ, ଅନ୍ୟଟି କଠିନ, ଦୁସ୍ତର । ସାଧାରଣ ମଣିଷ ମାନେ ହିଁ ପ୍ରେୟର ଉପାସକ । ସେବକ ଶ୍ୟାମସୁନ୍ଦର ପୂର୍ଣ୍ଣମାତ୍ରାରେ ଶ୍ରେୟ ପଥର ଉପାସକ ନ ଥିଲେ ମଧ୍ୟ ପ୍ରତ୍ୟେକ କ୍ଷେତ୍ରରେ ସ୍ପଷ୍ଟ, ସ୍ୱାଧୀନ ଓ ବିବେକାନୁମୋଦିତ ମତ ପ୍ରକାଶ କରିବା ତାଙ୍କ ଚରିତ୍ରର ଏକ ବୈଶିଷ୍ଟ୍ୟ ।

ସେବକ ଶ୍ୟାମସୁନ୍ଦର ୧୯୦୯ ମସିହା ଫେବୃୟାରୀ ମାସ ୧୫ ତାରିଖରେ ଗଞ୍ଜାମ ଜିଲ୍ଲାର ସାନଖେମଣ୍ଡିର ଗଙ୍ଗାଧରପୁର ଶାସନରେ ଗୋଟିଏ ମଧ୍ୟବିତ୍ତ ପରିବାରରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ଚନ୍ଦ୍ରଶେଖର ମିଶ୍ର ଓ ମାତାଙ୍କ ନାମ ବାଇକୋଳି ଦେବୀ । ପିତା ଚନ୍ଦ୍ରଶେଖର ଥିଲେ ମିଡ଼ିଲ ସ୍କୁଲର ଜଣେ ଶିକ୍ଷକ । ଓଡ଼ିଆ ଓ ସଂସ୍କୃତରେ ତାଙ୍କର ପାଣ୍ଡିତ୍ୟ ଥିଲା ଏବଂ ଦିଗପହଣ୍ଡି ରାଜାଙ୍କଦ୍ୱାରା ସେ ସାହିତ୍ୟ ରତ୍ନାକର ଉପାଧିରେ ଭୂଷିତ ହୋଇଥିଲେ । ତାଙ୍କର ତିନିପୁଅଙ୍କ ମଧ୍ୟରେ ଜଗନ୍ନାଥ ଜ୍ୟେଷ୍ଠ, ଶ୍ୟାମସୁନ୍ଦର ମଧ୍ୟମ ଏବଂ ବ୍ରଜବନ୍ଧୁ କନିଷ୍ଠ । ଜଗନ୍ନାଥ ମିଶ୍ର ସ୍ୱାଧୀନତା ସଂଗ୍ରାମରେ ଯୋଗଦେଇ ବହୁବାର ଜେଲ ବରଣ କରିଛନ୍ତି । କନିଷ୍ଠ ଭ୍ରାତା ବ୍ରଜବନ୍ଧୁ ଜଣେ କବିରାଜ, କିନ୍ତୁ ଶ୍ୟାମସୁନ୍ଦରଙ୍କ ଜୀବନର ଗତି ଥିଲା ସଂପୂର୍ଣ୍ଣ ଭିନ୍ନ ଧରଣର । ତାଙ୍କର ପ୍ରାଥମିକ ଶିକ୍ଷା ଆରମ୍ଭ ହୋଇଥିଲା ଦିଗପହଣ୍ଡିର ଜର୍ଜ ମିଡ଼ିଲ୍ ସ୍କୁଲରେ । ସେଇ ଶିକ୍ଷାନୁଷ୍ଠାନ

ବର୍ତ୍ତମାନ ବିଜେପଦ୍ଦଣ୍ଡି ମହାବିଦ୍ୟାଳୟରେ ପରିଣତ ହୋଇଛି । ଗାଆଁରେ ବାଲ୍ୟଶିକ୍ଷା ସମାପ୍ତ ପରେ ସେ ଆସିଲେ ବ୍ରହ୍ମପୁରସ୍ଥିତ ଖଲ୍ଲିକୋଟ କଲେଜକୁ । ସେତେବେଳେ ଖଲ୍ଲିକୋଟ କଲେଜରେ ଏଣ୍ଟ୍ରାନ୍ସ ସହିତ ଇଣ୍ଟରମିଡିଏଟ୍ ଶ୍ରେଣୀ ଖୋଲା ଯାଇଥାଏ । ସେଠାରେ ଅଷ୍ଟମ ଶ୍ରେଣୀ ପାଠ ଶେଷ କରି ସେ ପୁରୀକୁ ଆସିଲେ । ସେତେବେଳେ ପୁରୀରେ ସଂସ୍କୃତ ଶିକ୍ଷା ପାଇଁ ଅନେକଗୁଡ଼ିଏ ଅନୁଷ୍ଠାନ ଥାଏ । ପିତା ଚନ୍ଦ୍ରଶେଖରଙ୍କର ସଂସ୍କୃତ ପ୍ରତି ବିଶେଷ ଅନୁରାଗ ଥାଏ । ତେଣୁ ସେ ପୁତ୍ରଙ୍କୁ ସଂସ୍କୃତ କଲେଜରେ ଶିକ୍ଷା ଦେବାପାଇଁ ମନସ୍ଥ କରିଥିଲେ । ଶ୍ୟାମସୁନ୍ଦରଙ୍କର ଅଜା ଭୁବନେଶ୍ୱର ମହାପାତ୍ର ସଂସ୍କୃତ ମହାବିଦ୍ୟାଳୟର ଜଣେ ପ୍ରଧାନ ଅଧ୍ୟାପକ ଥିଲେ । ଶ୍ୟାମସୁନ୍ଦର ମହାପାତ୍ର ସଂସ୍କୃତ ମହାବିଦ୍ୟାଳୟର ଅଧ୍ୟକ୍ଷ ଥିଲେ । ଶ୍ୟାମସୁନ୍ଦରଙ୍କର ପିତାଙ୍କର ଜଣେ ବନ୍ଧୁ ସଂସ୍କୃତରେ ଶିକ୍ଷକତା କରୁଥିଲେ । ତାଙ୍କର ହସ୍ତରେଖା ବିଷୟରେ ବେଶ୍ ଜ୍ଞାନ ଥିଲା । ସେ ବାଳକ ଶ୍ୟାମସୁନ୍ଦରଙ୍କ ହସ୍ତରେଖା ଦେଖି ତାଙ୍କର ଉଜ୍ଜ୍ୱଳ ଭବିଷ୍ୟତ ସମ୍ପର୍କରେ ବନ୍ଧୁ ରତ୍ନାକରଙ୍କୁ ସୂଚନା ଦେଇଥିଲେ । ଶ୍ୟାମସୁନ୍ଦର ଇଂରାଜୀ ଭାଷାରେ ବିଶ୍ୱବିଦ୍ୟାଳୟରେ ଉଚ୍ଚଶିକ୍ଷା ଲାଭ କରିବାର ସୂଚନା ମିଳୁଛି ବୋଲି ସେ ତାଙ୍କ ପିତାଙ୍କୁ ଜଣାଇ ଦେଇଥିଲେ, ତେଣୁ ସେ ଶ୍ୟାମସୁନ୍ଦରଙ୍କୁ ସଂସ୍କୃତ ଶିକ୍ଷା ନ ଦେଇ ଇଂରାଜୀ ଶିକ୍ଷା ଦେବାପାଇଁ ପରାମର୍ଶ ଦେଇଥିଲେ । ତାଙ୍କର ପରାମର୍ଶ ଅନୁଯାୟୀ ୧୯୨୫ ମସିହାରେ ଶ୍ୟାମସୁନ୍ଦର ପୁରୀ ଜିଲ୍ଲାରେ ନବମ ଶ୍ରେଣୀରେ ନାମ ଲେଖାଇ ୧୯୨୭ ପର୍ଯ୍ୟନ୍ତ ସେଠାରେ ଅଧ୍ୟୟନ କରି ଏଣ୍ଟ୍ରାନ୍ସ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ । ପିତାଙ୍କପରି ଶ୍ୟାମସୁନ୍ଦରଙ୍କର ମଧ୍ୟ ସଂସ୍କୃତ ପଢ଼ିବାପାଇଁ ଆଗ୍ରହ ଥାଏ । ତେଣୁ ସେ ଘରୋଇ ଭାବରେ ସଂସ୍କୃତରେ ପ୍ରଥମ ପରୀକ୍ଷା ଦେଇ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇଥିଲେ । ସେତେବେଳକୁ ସେ ସଂସ୍କୃତ ବ୍ୟାକରଣ ଓ କାଳିଦାସଙ୍କକୃତ ରଘୁବଂଶ ଇତ୍ୟାଦି ପାଠକରି ସାରିଥିଲେ । ପୁରୀରେ ପଢ଼ିଲା ସମୟରେ ସେ ତାଙ୍କ ପିତାଙ୍କ ସହିତ ଦୁଇ ବଖରା କୋଠାଘର ମାସ ଦୁଇଟଙ୍କାରେ ଭଡ଼ାନେଇ ରହୁଥିଲେ । ସେତେବେଳେ ମଧ୍ୟ ଭାରତୀୟ ଜାତୀୟ କଂଗ୍ରେସର ଆହ୍ୱାନରେ ସମଗ୍ର ଦେଶରେ ଜାତୀୟ ମୁକ୍ତି ସଂଗ୍ରାମର ସ୍ରୋତ ପ୍ରବାହିତ ହେଉଥାଏ । ୧୯୨୦ ମସିହାରୁ ସମଗ୍ର ଦେଶରେ ଇଂରେଜ ସରକାର ବିରୋଧରେ

ଅସହଯୋଗ ଆନ୍ଦୋଳନ ଆରମ୍ଭ ହୋଇଯାଇଥାଏ । ଓଡ଼ିଶାରେ ସେହି ଆନ୍ଦୋଳନର ପ୍ରଧାନ ପୁରୋଧା ଥିଲେ ପଣ୍ଡିତ ଉତ୍କଳମଣି ଗୋପବନ୍ଧୁ ଦାସ । ତାଙ୍କର ନେତୃତ୍ୱରେ ଓଡ଼ିଶାର ବିଭିନ୍ନ ସ୍ଥାନରେ ସଭା ସମିତିମାନ କରାଯାଇ ସରକାର ବିରୋଧରେ ଆନ୍ଦୋଳନ ଚାଲିଥାଏ । ପୁରୀରେ ଅଧ୍ୟୟନ କରୁଥିବା ସମୟରେ ଯୁବକ ଶ୍ୟାମସୁନ୍ଦର ବିଭିନ୍ନ ସଭା ସମିତିରେ ଯୋଗ ଦେଉଥାଆନ୍ତି । ସେହି ସମୟରୁ ତାଙ୍କର ସୁପ୍ତ ମନରେ ଜାତୀୟତାବୋଧର ବୀଜ ବପନ ହୋଇଥାଏ । ପୁରୀରେ ପଢ଼ିବା ସମୟରୁ ସେ ବିଦେଶୀ ବସ୍ତ୍ର ବର୍ଜନ କରି ସ୍ୱଦେଶୀ ଖଦଡ଼ ବସ୍ତ୍ର ପରିଧାନ କରୁଥିଲେ ।

ପୁରୀରେ ସ୍କୁଲ ଶିକ୍ଷା ସମାପ୍ତ ପରେ ତାଙ୍କର କଲେଜ ଜୀବନ ଆରମ୍ଭ ହେଲା କଟକର ରେଭେନ୍‌ସା କଲେଜରେ ୧୯୨୮ ମସିହାରେ । ସେତେବେଳେ କଲେଜର ଅଧ୍ୟକ୍ଷ ଥାଆନ୍ତି Orgyll ସାହେବ । ସେତେବେଳେ ସ୍ୱାଧୀନତା ସଂଗ୍ରାମକୁ କେନ୍ଦ୍ରକରି କଟକରେ ମଧ୍ୟ ସଭାସମିତି, ଶୋଭାଯାତ୍ରା ଚାଲିଥାଏ । ସ୍କୁଲ କଲେଜର ଛାତ୍ରମାନେ ସେଥିରେ ସ୍ୱତଃପ୍ରବୃତ୍ତ ଭାବରେ ଯୋଗ ଦେଉଥାଆନ୍ତି । କିନ୍ତୁ ଅଧ୍ୟକ୍ଷ Orgyll ସାହେବ କଲେଜର ପିଲାମାନଙ୍କୁ ସେସବୁ ଆନ୍ଦୋଳନ, ଶୋଭାଯାତ୍ରା, ସଭାସମିତିରେ ଯୋଗ ନ ଦେବା ପାଇଁ ପରାମର୍ଶ ଦେଉଥାଆନ୍ତି । ସେତେବେଳେ ଦେଶରେ ଗୋଟିଏ ବିଶିଷ୍ଟ ଘଟଣାକୁ କେନ୍ଦ୍ରକରି ସମଗ୍ର ଦେଶରେ ପ୍ରବଳ ଉତ୍ତେଜନା ସୃଷ୍ଟି ହୋଇଥାଏ । ଘଟଣାଟି ହେଲା; ଭାରତର ଜାତୀୟ ଆନ୍ଦୋଳନର ଅନ୍ୟତମ ବିଶିଷ୍ଟ ନେତା ଲାଲା ଲଜପତ ରାୟଙ୍କୁ ଇଂରେଜମାନେ ନିର୍ମମ ଭାବରେ ମାଡ଼ ଦେଇଥାଆନ୍ତି । କଟକରେ ମଧ୍ୟ ତାର ପ୍ରତିକ୍ରିୟା ଅନୁଭୂତ ହୋଇଥାଏ । ଏହି ଘଟଣାକୁ କେନ୍ଦ୍ରକରି ରେଭେନ୍‌ସା କଲେଜର ପିଲାମାନେ ରମାଦେବୀ ଓ ମାଳତୀ ଦେବୀଙ୍କ ପ୍ରରୋଚନାରେ କଲେଜରେ ହରତାଳ ପାଳନ କରୁଥିଲେ; ଯେଉଁଥିରେ କି ଯୁବକ ଶ୍ୟାମସୁନ୍ଦର ମଧ୍ୟ ଯୋଗ ଦେଇଥିଲେ । ରେଭେନ୍‌ସା କଲେଜରେ ଅଧ୍ୟୟନ କରିବା ସମୟରେ ଓଡ଼ିଶାର ବିଶିଷ୍ଟ ଅର୍ଥନୀତିଜ୍ଞ ଡକ୍ଟର ସଦାଶିବ ମିଶ୍ର ତାଙ୍କର ସହାଧ୍ୟାୟୀ ଥିଲେ । ଯୁବକ ଶ୍ୟାମସୁନ୍ଦର ୧୯୩୧ ମସିହାରେ ଅର୍ଥନୀତି ଓ ରାଜନୀତି ବିଜ୍ଞାନରେ ସମ୍ମାନ ସହ ବି.ଏ. ପାସ୍ କରିଥିଲେ ।

ଯେତେବେଳେ ଓଡ଼ିଶାରେ ଏମ୍.ଏ. ପଢ଼ିବାର କୌଣସି ସୁବିଧା ନ ଥାଏ । ସୋନପୁର ରଜାଙ୍କ Chairରେ ରେଭେନ୍‌ସା କଲେଜରେ କେବଳ ଇଂରାଜୀ ଏମ୍.ଏ. ପଢ଼ିବାର ସୁବିଧା ଥାଏ । ବିଶିଷ୍ଟ ଶିକ୍ଷାବିତ୍ ତଥା କବି ମାୟାଧର ମାନସିଂହ ରେଭେନ୍‌ସା କଲେଜରେ ଇଂରାଜୀରେ ଏମ୍.ଏ. ପଢୁଥିଲେ । ମାନସିଂହ ଶ୍ୟାମସୁନ୍ଦରଙ୍କ ଠାରୁ ମାତ୍ର ଗୋଟିଏ ବର୍ଷ Senior । ଅନ୍ୟ ବିଷୟରେ ଏମ୍.ଏ. ପଢ଼ିବାପାଇଁ ଓଡ଼ିଶାର ଛାତ୍ରଙ୍କୁ ବାହାରକୁ ଯିବାକୁ ହେଉଥିଲା । ବି.ଏ. ପାସ୍ ପରେ ଏମ୍.ଏ. ପଢ଼ିବାପାଇଁ ଶ୍ୟାମସୁନ୍ଦରଙ୍କ ପାଖରେ ସମ୍ବଳ ଅଭାବ । ତେଣୁ ସେ ରେଭେନ୍‌ସା କଲେଜର ଅଧ୍ୟାପକ ୰ ଲକ୍ଷ୍ମୀକାନ୍ତ ଚୌଧୁରୀଙ୍କ ପରାମର୍ଶରେ ତାଙ୍କର ଭଣେଇ ରାୟବାହାଦୁର ଭାସ୍କରଚନ୍ଦ୍ର ମହାପାତ୍ରଙ୍କ ପିଲାମାନଙ୍କର ଗୃହ ଶିକ୍ଷକ ନିଯୁକ୍ତ ହୋଇ ସେଠାରେ ମାତ୍ର ଦୁଇମାସ ପାଠ ପଢ଼ାଇଥିଲେ । ଭାସ୍କର ମହାପାତ୍ର ବେଶ୍ ଧନୀଲୋକ । ସେ ସମୟରେ ବ୍ୟବସାୟରେ ତାଙ୍କର ମାସିକ ଆୟ ଥାଏ ପ୍ରାୟ ଦଶ ହଜାର ଟଙ୍କା । ଶ୍ରୀ ମହାପାତ୍ର ବଡ଼ଲୋକ ହେଲେ ବି ବେଶ୍ ଉଦାର ଏବଂ ହୃଦୟବାନ୍ ପ୍ରକୃତିର । ଗରିବ ପିଲାମାନଙ୍କୁ ସାହାଯ୍ୟ ଦେଇ ଶିକ୍ଷା ଦେବାରେ ତାଙ୍କର ଆଗ୍ରହ ଥାଏ । ବହୁ ଶିକ୍ଷାନୁଷ୍ଠାନ ଓ ଗରିବ ପିଲାମାନଙ୍କୁ ଶିକ୍ଷାଲାଭ ପାଇଁ ସେ ସାହାଯ୍ୟ କରିଥିଲେ । ପ୍ରାଚୀନ ଓଡ଼ିଆ ସାହିତ୍ୟ ପ୍ରକାଶନ ପାଇଁ ପ୍ରାଚୀ ସମିତିକୁ ମଧ୍ୟ ସେ ବିପୁଳ ଅର୍ଥ ସାହାଯ୍ୟ କରିଥିଲେ । ଯୁବକ ଶ୍ୟାମସୁନ୍ଦରଙ୍କର ଉଚ୍ଚଶିକ୍ଷା ପ୍ରତି ଆଗ୍ରହ ଦେଖି ସେ ତାଙ୍କୁ ପାଟଣା ବିଶ୍ୱବିଦ୍ୟାଳୟରେ ଏମ୍.ଏ. ପଢ଼ିବା ପାଇଁ ଗୋଟିଏ ସର୍ତ୍ତରେ ସାହାଯ୍ୟ କରିବା ସମ୍ମତ ହୋଇଥିଲେ । ସର୍ତ୍ତଟି ହେଲା— ଶିକ୍ଷା ଶେଷରେ ଗୃହକର୍ମ କଲେ ଶ୍ରୀ ମିଶ୍ର ତାଙ୍କର ସମସ୍ତ ଋଣ ପରିଶୋଧ କରିଦେବେ । ଏଥିରେ ସେ ରାଜିହୋଇ ପାଟଣା ବିଶ୍ୱବିଦ୍ୟାଳୟରେ ଅର୍ଥନୀତି ଓ ରାଜନୀତି ବିଜ୍ଞାନରେ ଏମ୍.ଏ.ରେ ନାମ ଲେଖାଇଲେ ଏବଂ ୧୯୩୩ ମସିହାରେ ଏମ୍.ଏ. ପାସ କଲେ । ଏମ୍.ଏ. ପାଶ କଲା ପରେ ସେ କଲିକତା ଫେରିଆସି ନିଜର ଋଣ ପରିଶୋଧ କରିବାପାଇଁ ପୁଣି ଶ୍ରୀ ମହାପାତ୍ରଙ୍କ ଘରେ ତାଙ୍କ ପିଲାମାନଙ୍କର ଗୃହଶିକ୍ଷକ ଭାବରେ ଯୋଗ ଦେଲେ । ଯେତେବେଳେ କଲିକତା ରିପନ୍ ଆଇନ କଲେଜରେ ସେ ଗୋଟିଏ ବର୍ଷ ଆଇନ ପଢ଼ିଥିଲେ । ଶ୍ୟାମସୁନ୍ଦର ପିଲାଦିନରୁ ସ୍ୱାଧୀନଚେତା ଥିଲେ । ତାଙ୍କ ମତ ପ୍ରକାଶରେ ସେ ସବୁବେଳେ ସ୍ୱାଧୀନତା

ରହୁଁଥିଲେ । ସେଥିପାଇଁ ସେ ଅନେକ ସମୟରେ ଉଚ୍ଚ କର୍ତ୍ତୃପକ୍ଷଙ୍କର ବିଷଦୃଷ୍ଟିରେ ପଡ଼ୁଥିଲେ । ସେତେବେଳେ ସରକାରୀ ଚାକିରୀ ସଂଖ୍ୟା ଏତେ କମ୍ ଥିଲା ଯେ ଉଚ୍ଚଶିକ୍ଷିତ ଯୁବକମାନେ ସରକାରୀ ଚାକିରୀ ପାଉ ନ ଥିଲେ । କବି ଡଃ ମାୟାଧର ମାନସିଂହ ଓ ଡଃ ସଦାଶିବ ମିଶ୍ରଙ୍କ ପରି ମେଧାବୀ ଯୁବକମାନେ ଚାକିରୀ ଜୀବନ ଆରମ୍ଭ କରିଥିଲେ କନିକାରାଣୀ ଏବଂ ମୟୂରଭଞ୍ଜର ରାଜାଙ୍କ ଅଧୀନରେ । ଯୁବକ ଶ୍ୟାମସୁନ୍ଦର କଲିକତାରେ ଅବସ୍ଥାନ କରୁଥିବା ସମୟରେ ଥରେ ଡଃ ପ୍ରାଣକୃଷ୍ଣ ପରିଜାଙ୍କ ସହିତ ତାଙ୍କର ସାକ୍ଷାତ ହେଲା । ରେଭେନ୍‌ସା କଲେଜରେ ଅଧ୍ୟୟନ କରୁଥିବା ସମୟରେ ଡଃ ପରିଜା ତାଙ୍କର Warden ଥିଲେ । ଶ୍ୟାମସୁନ୍ଦରଙ୍କ ପ୍ରତି ତାଙ୍କର ଅତ୍ୟନ୍ତ ସ୍ନେହ ଏବଂ ଶ୍ରଦ୍ଧା ଥିଲା । ଛାତ୍ରାବସ୍ଥାରେ ସେ ଶ୍ୟାମସୁନ୍ଦରଙ୍କ ଆଚରଣ ତଥା କାର୍ଯ୍ୟକଳାପ ସମ୍ପର୍କରେ ବେଶ୍ ସଚେତନ ଥିଲେ । ବୋଧହୁଏ ସେଦିନ ଶ୍ୟାମସୁନ୍ଦରଙ୍କ ସହିତ ତାଙ୍କର ସାକ୍ଷାତ ଥିଲା ବିଧି-ନିର୍ଦ୍ଦିଷ୍ଟ । ନିଜକୁ ଜନସେବାରେ ନିୟୋଜିତ କରିବାପାଇଁ ସେ ତାଙ୍କୁ ପରାମର୍ଶ ଦେବା ସହିତ ଉପଯୁକ୍ତ କ୍ଷେତ୍ର ପ୍ରସ୍ତୁତ କରିବାରେ ସାହାଯ୍ୟ ମଧ୍ୟ କରିଥିଲେ ।

ଗୁରୁ ଶିଷ୍ୟଙ୍କର ଅପୂର୍ବ ମିଳନରେ ସେଦିନ ତାଙ୍କ ଜୀବନର ଗତି ନିର୍ଦ୍ଧାରିତ ହୋଇଗଲା । ସେତେବେଳେ ସମଗ୍ର ଦେଶରେ ସ୍ୱାଧୀନତା ଆନ୍ଦୋଳନର ପ୍ରବଳ ଆଲୋଡ଼ନ । ଦେଶ ସାରା ନେତାମାନେ ବିଭିନ୍ନ କ୍ଷେତ୍ରରେ କାର୍ଯ୍ୟ କରି ଦେଶରୁ ବିଦେଶୀ ଶାସନର ବିଲୋପପାଇଁ ଆପ୍ରାଣ ଉଦ୍ୟମ କରୁଥାଆନ୍ତି । ସ୍ୱାଧୀନତା ଆନ୍ଦୋଳନର ଅନ୍ୟତମ ମୁଖ୍ୟ କର୍ଣ୍ଣଧାର ଶ୍ରୀ ଗୋପାଳକୃଷ୍ଣ ଗୋଖ୍‌ଲେ ୧୯୦୫ ମସିହାରେ ମହାରାଷ୍ଟ୍ରର ପୁନାଠାରେ ଦେଶର ଯୁବକମାନଙ୍କ ନିଃସ୍ୱାର୍ଥପର ଭାବରେ ଦେଶମାତୃକାର ସେବା କରିବା ଉଦ୍ଦେଶ୍ୟରେ Servant of India Society ନାମରେ ଗୋଟିଏ ସଂଘ ଗଠନ କରିଥାଆନ୍ତି । ପରବର୍ତ୍ତୀ ସମୟରେ ଏହି ଅନୁଷ୍ଠାନ ବେଶ୍ ସୁନାମ ଅର୍ଜ୍ଜନ କରିଛି । ସମସ୍ତଙ୍କୁ ଏ ଅନୁଷ୍ଠାନରେ ସଭ୍ୟ କରି ନିଆଯାଉ ନ ଥିଲା । ଯେଉଁମାନେ ଏହାର ସଦସ୍ୟଭୁକ୍ତ ହେଉଥିଲେ, ସେମାନଙ୍କୁ ସାତୋଟି ମୌଳିକ ନିୟମ ପାଳନ କରିବାକୁ ହେଉଥିଲା । ସେହି ନିୟମଗୁଡ଼ିକ ହେଲା—

(୧) ମୋର ଚିନ୍ତାରାଜ୍ୟରେ ଦେଶର କଥାହିଁ ପ୍ରଥମ ସ୍ଥାନ ଅଧିକାର କରିବ ଏବଂ ତାର ସେବାଲାଗି ମୁଁ ମୋର ଜୀବନର ଶ୍ରେଷ୍ଠାଂଶ ବିନିଯୋଗ କରିବ ।

(୨) ଦେଶର ସେବା କରିବା ସମୟରେ ମୁଁ ନିଜ ପାଇଁ କୌଣସି ବ୍ୟକ୍ତିଗତ ସୁବିଧା ଗ୍ରହଣ କରିବି ନାହିଁ ।

(୩) ପ୍ରତ୍ୟେକ ଭାରତୀୟଙ୍କୁ ନିଜର ଭାଇ ଭାବରେ ଦେଖିବ ଏବଂ ଜାତିଧର୍ମ ନିର୍ବିଶେଷରେ ସମସ୍ତଙ୍କର ଉନ୍ନତି ପାଇଁ ଚେଷ୍ଟା କରିବ ।

(୪) ମୋର ତଥା ମୋ ପରିବାରର ଜୀବିକାନିର୍ବାହ ପାଇଁ ମୋ ଅନୁଷ୍ଠାନ ଯେଉଁ ବ୍ୟବସ୍ଥା କରିବ ସେଥିରେ ମୁଁ ସନ୍ତୁଷ୍ଟ ରହିବ । ମୁଁ ନିଜେ ଟଙ୍କା ରୋଜଗାର କରିବାପାଇଁ ମୋର ସମୟ ଓ ସାମର୍ଥ୍ୟ ବିନିଯୋଗ କରିବ ନାହିଁ ।

(୫) ମୁଁ ପବିତ୍ର ବ୍ୟକ୍ତିଗତ ଜୀବନଯାପନ କରିବ ।

(୬) ମୁଁ କୌଣସି ଲୋକ ସହିତ ବ୍ୟକ୍ତିଗତ କଳହରେ ବ୍ୟାପୃତ ହେବି ନାହିଁ ।

(୭) ମୁଁ ସର୍ବଦା ଆମ ଅନୁଷ୍ଠାନର ଉଦ୍ଦେଶ୍ୟ ଆଖି ଆଗରେ ରଖି ତାହାର ଉନ୍ନତି ପ୍ରତି ବରାବର ନିଜର ପୂର୍ଣ୍ଣ ସାମର୍ଥ୍ୟ ଦେଇ ତାହାର କାମ ଯେପରି ବଢ଼ିବ, ସେ ଦିଗରେ ଦୃଷ୍ଟି ଦେବି । ଆମ ଅନୁଷ୍ଠାନର ଉଦ୍ଦେଶ୍ୟବିରୋଧୀ କୌଣସି କାର୍ଯ୍ୟ ମୁଁ କରିବ ନାହିଁ ।

ଯେଉଁମାନେ ଏହି ସାତୋଟି ମୌଳିକ ନିୟମ ପାଳନ କରିବାକୁ ପ୍ରତିଜ୍ଞା କରୁଥିଲେ ସେଇମାନଙ୍କୁ ସଙ୍ଘର ଆଜୀବନ ସଭ୍ୟ ଭାବରେ ଗ୍ରହଣ କରାଯାଉଥିଲା । ସଙ୍ଘର ଆଜୀବନ ସଭ୍ୟମାନଙ୍କୁ ସେମାନଙ୍କ ପରିବାରର ଭରଣପୋଷଣ ପାଇଁ କିଛି ଆର୍ଥିକ ସାହାଯ୍ୟ ମଧ୍ୟ ଦିଆଯାଏ । ୧୯୩୪ ମସିହାରେ ସଙ୍ଘର ସଭାପତି ଥାଆନ୍ତି ଶ୍ରୀ ଗୋପାଳକୃଷ୍ଣ ଦେବଧର । ତାଙ୍କ ସହିତ ଡଃ ପରିଜାଙ୍କର ବେଶ୍ ସୁସମ୍ପର୍କ ଥାଏ । ଶ୍ୟାମସୁନ୍ଦରଙ୍କୁ ଅନୁଷ୍ଠାନର

ଜଣେ ସଭ୍ୟ କରେଇବା ପାଇଁ ଡଃ ପରିଜା ଶ୍ରୀଯୁକ୍ତ ଦେବଧରଙ୍କୁ ପତ୍ରଦ୍ୱାରା ଜଣାଇଲେ । Servant of India Societyର ସଭ୍ୟ ଗ୍ରହଣର ନିର୍ଦ୍ଦିଷ୍ଟ ସମୟ ଥାଏ ଜୁନ୍ ମାସ । ପରବର୍ତ୍ତୀ ସମୟରେ ଏଇ Societyର ନାମକରଣ ହେଲ "ହିନ୍ଦ୍ ସେବକ ସଙ୍ଘ" ଭାବରେ । ୧୯୩୪ ମସିହାରେ ଡଃ ପରିଜାଙ୍କ ସହିତ ସାକ୍ଷାତ ହେବାପରେ ଯୁବକ ଶ୍ୟାମସୁନ୍ଦର ହିନ୍ଦ୍ ସେବକ ସଙ୍ଘରେ ଆଜୀବନ ସଭ୍ୟ ହେବାପାଇଁ ସିଦ୍ଧାନ୍ତ ନେଇ କଲିକତା ନଗରୀ ତ୍ୟାଗ କରିବା ମନସ୍ଥ କରି ଶ୍ରୀଯୁକ୍ତ ଭାସ୍କର ମହାପାତ୍ରଙ୍କୁ ସମସ୍ତ କଥା ଜଣାଇଲେ । ଶ୍ୟାମସୁନ୍ଦରଙ୍କର ଦେଶ ସେବା ପ୍ରତି ଆଗ୍ରହ ଦେଖି ଶ୍ରୀଯୁକ୍ତ ମହାପାତ୍ର ଖୁସିହୋଇ ତାଙ୍କୁ ସମସ୍ତ ଋଣ ଭାରରୁ ମୁକ୍ତ ଦେଇ ଆନନ୍ଦର ସହିତ ତାଙ୍କୁ ବିଦାୟ ଦେଲେ । ୧୯୩୪ ମସିହାର ପ୍ରାୟ ମଧ୍ୟ ଭାଗରେ ସେ କଲିକତା ତ୍ୟାଗ କରି କଟକକୁ ଫେରି ଆସିଲେ ।

୧୯୨୯ ମସିହାରେ ରେଭେନ୍ସା କଲେଜରେ ଅଧ୍ୟୟନ କରୁଥିବା ସମୟରେ ତାଙ୍କର ବିବାହ କାର୍ଯ୍ୟ ସମ୍ପନ୍ନ ହୋଇଯାଇଥାଏ । ତାଙ୍କର ସ୍ତ୍ରୀଙ୍କ ନାମ ଶ୍ରୀମତୀ କାଦମ୍ବିନୀ ଦେବୀ । ତାଙ୍କର ଗୋଟିଏ ପୁଅ ଏବଂ ତିନି ଝିଅ । ବଡ଼ପୁଅ ଆଜକୁ ୧୫ ବର୍ଷ ହେବ ଆମେରିକାରେ ଅବସ୍ଥାନ କରୁଛନ୍ତି । ସେ ଯୁକ୍ତରାଷ୍ଟ୍ର ଆମେରିକାର ନ୍ୟୁୟର୍କ ସହରରେ Computur Training Centreର ମ୍ୟାନେଜର ଭାବରେ କାର୍ଯ୍ୟ କରୁଛନ୍ତି । ତିନୋଟି-ଯାକ କନ୍ୟା ବେଶ୍ ଉଚ୍ଚ ଶିକ୍ଷିତା, ବିବାହିତା । ମଧ୍ୟମାକନ୍ୟା ଶ୍ରୀମତୀ ରମାରାଣୀ ହୋତା । Allied Service ପାଇ ରାଉରକେଲାରେ Income Tax ବିଭାଗର Asst. Commissioner ଭାବରେ କାର୍ଯ୍ୟ କରୁଛନ୍ତି । ସେ ଶ୍ରୀ ପ୍ରସନ୍ନ କୁମାର ହୋତା I.A.S.ଙ୍କ ସହଧର୍ମିଣୀ । କଲିକତାରୁ ଫେରି ଆସିବା ପରେ ନିଜର ଭରଣପୋଷଣ ପାଇଁ ତାଙ୍କୁ ଚାକିରିଟିଏ ଦରକାର ହେଲା । କଟକର ମହମ୍ମଦିଆ ବଜାରରେ ସେ ଗୋଟିଏ ଭଡ଼ାଘରେ ରହୁଥାଆନ୍ତି । ସେତେବେଳେ ୰ଗୋପାଳଚନ୍ଦ୍ର ପ୍ରହରାଜଙ୍କର ଭାଷାକୋଷ ପ୍ରଣୟନ କାର୍ଯ୍ୟ ଚାଲିଥାଏ । ଶ୍ୟାମସୁନ୍ଦର ମାସିକ ମାତ୍ର ପନ୍ଦର ଟଙ୍କା ବେତନରେ ସେଠାରେ ଭାଷାକୋଷ ପ୍ରଣୟନ କାର୍ଯ୍ୟରେ ଯୋଗଦେଲେ । ପ୍ରାୟ ଛଅମାସ ସେ ସେଠାରେ କାର୍ଯ୍ୟ କରିଥିଲେ ।

ଡଃ ପରଞ୍ଜାଙ୍କ ଚିଠି ପାଇ ଶ୍ରୀଯୁକ୍ତ ଦେବଧର ଯୁବକ ଶ୍ୟାମସୁନ୍ଦରଙ୍କୁ ପୁନାଠାରେ ତାଙ୍କୁ ସାକ୍ଷାତ କରିବାପାଇଁ ଜଣାଇଦେଲେ । ୧୯୩୫ ମସିହାରେ ସେ ତାଙ୍କ ପୁନାଠାରେ ସାକ୍ଷାତ କଲେ । ଅନୁଷ୍ଠାନର ଆଇନ ଶୃଙ୍ଖଳା ପ୍ରତି ତାଙ୍କର ଆନୁଗତ୍ୟର ପରୀକ୍ଷା ପାଇଁ ତାଙ୍କୁ ଗୋଟିଏ ବର୍ଷ ଶିକ୍ଷାନବିସ୍ ଭାବରେ ରଖାଗଲା । ସେତେବେଳେ ସେ ସର୍ଭେଣ୍ଟ୍ସ ଅଫ୍ ଇଣ୍ଡିଆ ସୋସାଇଟିର ବିଭିନ୍ନ ଶାଖାରେ କାର୍ଯ୍ୟ କରି ଅନୁଷ୍ଠାନର ସେବାମୂଳକ କାର୍ଯ୍ୟରେ ଶିକ୍ଷା ଅର୍ଜନ କରିବାର ସୁଯୋଗ ପାଇଥିଲେ । ଶିକ୍ଷାନବିସ୍ ସମୟରେ ତାଙ୍କୁ କଟକରେ ତିନି ମାସ, ନାଗପୁରରେ ତିନି ମାସ ଏବଂ ପୁନାରେ ଛଅମାସ ପାଇଁ କାର୍ଯ୍ୟ କରିବାକୁ ହୋଇଥିଲା । ଶିକ୍ଷାନବିସ୍ ସମୟରେ ସେ ବିଭିନ୍ନ କ୍ଷେତ୍ରରେ ଦକ୍ଷତାର ସହିତ କାର୍ଯ୍ୟ କରିଥିବାରୁ ତାଙ୍କୁ ୧୯୩୬ ମସିହାରେ ଅନୁଷ୍ଠାନର ଆଜୀବନ ସଭ୍ୟ ଭାବରେ ଗ୍ରହଣ କରାଗଲା । ସେହି ବର୍ଷ ସେ ଲକ୍ଷ୍ନୌଠାରେ ଅନୁଷ୍ଠିତ ହୋଇଥିବା କଂଗ୍ରେସ ଅଧିବେଶନରେ ଯୋଗଦେବାର ସୁଯୋଗ ପାଇଥିଲେ । ୧୯୩୬ ମସିହା ଠାରୁ ୧୯୩୭ ମସିହା ପର୍ଯ୍ୟନ୍ତ ସେ ଦିଲ୍ଲୀ, ବମ୍ବେ ଓ ନାଗପୁରରେ ସଙ୍ଘର ବିଭିନ୍ନ ଦାୟିତ୍ୱରେ ରହି କାର୍ଯ୍ୟ କରିଥିଲେ । ସେତେବେଳେ 'ସର୍ଭେଣ୍ଟ ଅଫ୍ ଇଣ୍ଡିଆ' ନାମକ ଗୋଟିଏ ସାପ୍ତାହିକ ଇଂରାଜୀ ପତ୍ରିକା ସଙ୍ଘର ମୁଖ୍ୟ କାର୍ଯ୍ୟାଳୟ ପୁନାରୁ ପ୍ରକାଶିତ ହେଉଥାଏ । ସେବକ ଶ୍ୟାମସୁନ୍ଦର କିଛି କାଳ ପାଇଁ ସେଇ ପତ୍ରିକାର ଆସିଷ୍ଟାଣ୍ଟ ଏଡ଼ିଟର ଭାବରେ କାର୍ଯ୍ୟ କରିଥିଲେ । ସେତେବେଳେ ନାରାୟଣ ମହ୍ଲାର ଯୋଶୀ ଥିଲେ ସଙ୍ଘ ଉପ-ସଭାପତି । ସେ ଜଣେ ସୁଦକ୍ଷ ସଂଗଠକ ଏବଂ ପଣ୍ଡିତ ଲୋକ । ଆମ ଦେଶରେ ଟ୍ରେଡ୍ ୟୁନିୟନ ଅର୍ଗାନାଇଜେସନ୍‌ର ଜନ୍ମଦାତା ଭାବରେ ସେ ପରିଚିତ ଥିଲେ ଏବଂ ସେଣ୍ଟ୍ରାଲ୍ ଆସେମ୍ବ୍ଲିର ଜଣେ ସଦସ୍ୟ ଥିଲେ । ଶ୍ୟାମସୁନ୍ଦର କିଛି ମାସ ପାଇଁ ଦିଲ୍ଲୀରେ ତାଙ୍କୁ ସଙ୍ଘ ଓ ଅନ୍ୟାନ୍ୟ ସେବା-ମୂଳକ କାର୍ଯ୍ୟରେ ସାହାଯ୍ୟ କରିଥିଲେ । ଶିକ୍ଷାନବିସ୍ ଥିବା ସମୟରେ ତାର ମୁଖ୍ୟ କାର୍ଯ୍ୟ ଥିଲା ବିକଳାଙ୍ଗ ଲୋକମାନଙ୍କର ଅବସ୍ଥାର ଉନ୍ନତି ଏବଂ ବିଭିନ୍ନ ସେବାସଦନର କାର୍ଯ୍ୟ ପରିଚାଳନା । ୧୯୩୭ ମସିହାରେ ସେ ଓଡ଼ିଶାକୁ ଫେରିଆସିଲେ ଏବଂ ଓଡ଼ିଶା ହେଲା ତାଙ୍କ କର୍ମକ୍ଷେତ୍ରର କେନ୍ଦ୍ର-ବିନ୍ଦୁ । ଓଡ଼ିଶାରେ ହିନ୍ଦ୍ ସେବକ ସଙ୍ଘର ପ୍ରତିଷ୍ଠାତା ଥିଲେ ୰ଲକ୍ଷ୍ମୀନାରାୟଣ

ସାହୁ । ସେବା ଓ ତ୍ୟାଗ କ୍ଷେତ୍ରରେ ସେ ଅନ୍ୟମାନଙ୍କର ନମସ୍ୟ । ଶ୍ୟାମସୁନ୍ଦର ତାଙ୍କୁ ଓଡ଼ିଶାର ବିଭିନ୍ନ ସେବାମୂଳକ କାର୍ଯ୍ୟରେ ସହଯୋଗ କଲେ ଏବଂ ସେ ତାଙ୍କର ହେଲେ ମୁଖ୍ୟ ସହକର୍ମୀ । ୧୯୬୩ ମସିହାରେ ଲକ୍ଷ୍ମୀନାରାୟଣ ସାହୁଙ୍କର ମୃତ୍ୟୁ ପରେ ସେ ଆଜି ପର୍ଯ୍ୟନ୍ତ ସମ୍ପୂର୍ଣ୍ଣ ଭାବରେ ଓଡ଼ିଶା ଶାଖାର ଦାୟିତ୍ୱରେ ଅଛନ୍ତି । ଯେତେବେଳେ ସମଗ୍ର ଦେଶରେ ନାଗରିକ ସ୍ୱାଧୀନତା ସମ୍ମିଳନୀ ପ୍ରତିଷ୍ଠିତ ହେଉଥାଏ । ସେହି ଆଦର୍ଶରେ ଓଡ଼ିଶାରେ ନାଗରିକ ସ୍ୱାଧୀନତା ସମ୍ମିଳନୀ ନାମରେ ଗୋଟିଏ ସଂସ୍ଥା ଗଠିତ ହୋଇଥିଲା । ଆଡ଼ଭୋକେଟ୍ ସ୍ୱାମୀ ବିଚିତ୍ରାନନ୍ଦ ଦାସ ଥିଲେ ତାର ସଭାପତି ଏବଂ ଶ୍ୟାମସୁନ୍ଦର ମିଶ୍ର ଏହି ସଂସ୍ଥାର ସମ୍ପାଦକ ଭାବରେ ଅନେକ ବର୍ଷଯାଏ କାର୍ଯ୍ୟ କରିଥିଲେ । ନାଗରିକ ଅଧିକାର ସମ୍ପର୍କରେ ଲୋକମାନଙ୍କୁ ସଚେତନ କରାଇବା ଥିଲା ଏଇ ଅନୁଷ୍ଠାନର ପ୍ରଧାନ ଲକ୍ଷ୍ୟ । ଜାତୀୟ ସ୍ତରରେ ଏଇ ଅନୁଷ୍ଠାନର ପ୍ରଥମ ସଭାନେତ୍ରୀ ଥିଲେ ୰ସରୋଜିନୀ ନାଇଡୁ । ସେତେବେଳେ ଏଇ ସଂସ୍ଥା ଆନୁକୂଲ୍ୟରେ କଟକ ସହରରେ ଓଡ଼ିଶା ରାଜ୍ୟ ନାଗରିକ ସ୍ୱାଧୀନତା ସମ୍ମିଳନୀ ଆହୂତ ହୋଇଥିଲା, ଯେଉଁଥିରେ କି ୰ପ୍ରିୟରଞ୍ଜନ ଦାସ ସଭାପତିତ୍ୱ କରିଥିଲେ । ଶ୍ରୀ ଦାସ ଦେଶବନ୍ଧୁ ୰ଚିତ୍ତରଞ୍ଜନ ଦାସଙ୍କର କନିଷ୍ଠ ଭ୍ରାତା । ପୁଣି ୧୯୫୭ ମସିହାରେ ସର୍ବଭାରତୀୟ ସ୍ତରରେ ନିଖିଳ ଭାରତ ନାଗରିକ ସ୍ୱାଧୀନତା ସମ୍ମିଳନୀ କଟକ ସହରରେ ଅନୁଷ୍ଠିତ ହୋଇ-ଥିଲା । ଏହି ସମ୍ମିଳନୀରେ ଲୋକନାୟକ ୰ଜୟପ୍ରକାଶ ନାରାୟଣ ସଭାପତିତ୍ୱ କରିଥିଲେ ।

୧୯୩୬ ମସିହାରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠିତ ହେଲା ଏବଂ ତାର ପ୍ରଥମ ପ୍ରଧାନମନ୍ତ୍ରୀ ଥିଲେ ବିଶ୍ୱନାଥ ଦାସ । ୧୯୩୬ ମସିହାଠାରୁ ୧୯୫୨ ମସିହା ପର୍ଯ୍ୟନ୍ତ ସେବକ ଶ୍ୟାମସୁନ୍ଦର ଆସେମ୍ବ୍ଲି ଅଧିବେଶନ ସମୟରେ ପ୍ରେସ୍ ଗ୍ୟାଲେରୀରେ ଉପସ୍ଥିତ ରହି ଓଡ଼ିଶାର ସମ୍ବାଦକୁ ସର୍ବ-ଭାରତୀୟ ସ୍ତରରେ ପ୍ରଚାର କରିବାପାଇଁ "ସର୍ଭେଣ୍ଟ ଅଫ୍ ଇଣ୍ଡିଆ" ଏବଂ ଦୈନିକ ସମ୍ବାଦପତ୍ର "ହିତବାଦ"କୁ ପଠାଉଥିଲେ । "ସର୍ଭେଣ୍ଟ ଅଫ୍ ଇଣ୍ଡିଆ" ପୁନାରୁ ଏବଂ "ହିତବାଦ" ନାଗପୁରରୁ ପ୍ରକାଶିତ ହେଉଥାଏ ।

ଓଡ଼ିଶା ନଦୀବହୁଳ ରାଜ୍ୟ । ଓଡ଼ିଶାର ଏକ ବିସ୍ତୃତ ସମୁଦ୍ର ଉପକୂଳ ରହିଛି । ଏଥିପାଇଁ ଓଡ଼ିଶା ବହୁବାର ବନ୍ୟା ଓ ବାତ୍ୟାର ସମ୍ମୁଖୀନ ହୋଇଛି । ବନ୍ୟା, ବାତ୍ୟା ପରେ ପରେ ତାର ପରବର୍ତ୍ତୀ ଫଳସ୍ୱରୂପ କେତେକ ସ୍ଥାନରେ ମରୁଡ଼ିର କରାଳ ଛାୟା ବି ଦେଖାଯାଇଛି । ଏହିପରି ପ୍ରାକୃତିକ ବିପର୍ଯ୍ୟୟ ସମୟରେ ସେବକ ଶ୍ୟାମସୁନ୍ଦର ଓଡ଼ିଶାର ଦୁର୍ଦ୍ଦଶାଗ୍ରସ୍ତ ଲୋକମାନଙ୍କର ଦୁଃଖ ଲାଘବ କରିବାପାଇଁ ବିପର୍ଯ୍ୟସ୍ତ ଅଞ୍ଚଳରେ ବହୁବାର ସେବାକାର୍ଯ୍ୟ କରିଛନ୍ତି । ୧୯୪୩ ମସିହାରେ ଓଡ଼ିଶାର ଉତ୍ତର ବାଲେଶ୍ୱର ଏବଂ ଦକ୍ଷିଣରେ ଗଞ୍ଜାମର ରମ୍ଭା, ଗୋପାଳପୁର, ଚିଲିକା, ପାଲୁର ଅଞ୍ଚଳ ଏବଂ ପଶ୍ଚିମବଙ୍ଗର ମେଦିନୀପୁର ଅଞ୍ଚଳରେ ବ୍ୟାପକ କ୍ଷୟକ୍ଷତି ହୋଇଥିଲା । ସେତେବେଳର କ୍ଷୟକ୍ଷତି ଅତ୍ୟନ୍ତ କରୁଣ ଓ ହୃଦୟବିଦାରକ ଥିଲା । "ହିନ୍ଦୁସ୍ଥାନ ଟାଇମ୍ସ"ର ସମ୍ପାଦକ ଶ୍ରୀ କେ. ଶାନ୍ତନମଙ୍କ ଲିଖିତ "The cry of distress"ର ଦୁଇଟି ଅଧ୍ୟାୟରେ ବିସ୍ତୃତ ଭାବରେ ସେ ଓଡ଼ିଶାରେ ହୋଇଥିବା ବାତ୍ୟାର କରୁଣ ଚିତ୍ର ଦେଇଛନ୍ତି । ସେତେବେଳେ ଓଡ଼ିଶାର ପ୍ରଧାନମନ୍ତ୍ରୀ ଥିଲେ ପାରଳାର ମହାରାଜା କୃଷ୍ଣଚନ୍ଦ୍ର ଗଜପତି ଦେବ । ୧୯୪୩ରେ ହୋଇଥିବା ବାତ୍ୟାରେ ଚିଲିକା ଉପକୂଳ ଭୟଙ୍କର ଭାବରେ କ୍ଷତିର ସମ୍ମୁଖୀନ ହୋଇଥିଲା । ଚିଲିକାର ପାଣି ଉପକୂଳ ଗ୍ରାମ-ମାନଙ୍କରେ ପ୍ଲାବିତ ହେବା ଫଳରେ ବହୁ ଘରଦ୍ୱାର, ଧନଜୀବନ ନଷ୍ଟ ହୋଇଥିଲା । କେତେକ ଅଞ୍ଚଳ ସମ୍ପୂର୍ଣ୍ଣ ଭାବରେ ନିଶ୍ଚିହ୍ନ ହୋଇଯାଇଥିଲା । ସେତେବେଳର ସରକାରୀ ହିସାବରୁ ଜଣାଯାଇଛି ଯେ କେବଳ ଗଞ୍ଜାମ ଜିଲ୍ଲାର ପାଲୁରରେ ୪୩୮ ଜଣ ମରିଥିଲେ, ୬,୧୬୯ଟି ଗାଈଗୋରୁ ଭାସି ଯାଇଥିଲେ । ୪୨,୧୧୫ ଘରଦ୍ୱାର ନଷ୍ଟ ହୋଇଥିଲା । ସରକାର କ୍ଷତିଗ୍ରସ୍ତ ଅଞ୍ଚଳରେ ସମ୍ପୂର୍ଣ୍ଣ ଭାଙ୍ଗିଯାଇଥିବା ଘରପାଇଁ ଟ ୫-୦୦ ଏବଂ ଆଂଶିକ ଭାବରେ ଭାଙ୍ଗିଯାଇଥିବା ଘରପାଇଁ ଦୁଇଟଙ୍କା ଆଠଅଣା ସାହାଯ୍ୟ ଦେଇ-ଥିଲେ । ସେତେବେଳେ କ୍ଷତିଗ୍ରସ୍ତ ଅଞ୍ଚଳରେ ଏପରି ଖାଦ୍ୟାଭାବ ଘଟିଲା ଯେ ଲୋକମାନେ ଦଳ ଦଳ ହୋଇ ଘରଦ୍ୱାର ଛାଡ଼ି ବ୍ରହ୍ମପୁର ପରି ନିକଟବର୍ତ୍ତୀ ସହରକୁ ଚାଲିଯାଉଥିଲେ । ଏହି ବାତ୍ୟାର କରୁଣ ଇତିହାସ ଶ୍ରୀ କେ. ଶାନ୍ତନମ୍ ୧୯୪୩ ଡିସେମ୍ବର ମାସରେ ପ୍ରକାଶିତ ତାଙ୍କ "The cry of distress" ପୁସ୍ତକର ଚତୁର୍ଦ୍ଦଶ ଅଧ୍ୟାୟର ୪୮ ପୃଷ୍ଠାରେ ଲେଖିଛନ୍ତି—

"Whole the officials and other agencis deserve praise for what they have done, it must be admitted that the only organisation which has stood by the poor people of the area steadily and stimulated and get set the standard for the others in the Orissa Relief Committee of which Shri A. V. Thakkor is the President. After the Cyclone of the last year, the relief work in Ganjam District was an entrusted to Shri Shyam Sundar Mishra who first established his camp at Palur where the Cyclone had struck most heavily. Almost all the houses at and around Palur had collapsed and besides providing food and the clothing, the main work of Mr. Mishra was to provide building matrials, money and doles to fisherman and others to get back their normal occupations.

ହିନ୍ଦ୍ ସେବକ ସଙ୍ଘ ତରଫରୁ ଶ୍ରୀ ଶ୍ୟାମସୁନ୍ଦର ମିଶ୍ର ପାଲୁର ଏବଂ ରମ୍ଭାରେ କ୍ୟାମ୍ପ୍ ପକାଇ ଦିନଦିନ, ଗତିରାତି ଧରି ବିପର୍ଯ୍ୟସ୍ତ ଅଞ୍ଚଳରେ ଲୋକମାନଙ୍କୁ ଖାଦ୍ୟ, ବସ୍ତ୍ର, ବାସଗୃହ ଯୋଗାଇବା ପାଇଁ ଅକ୍ଳାନ୍ତ ପରିଶ୍ରମ କରିଥିଲେ । ଓଡ଼ିଶାରେ ଯେଉଁ ଅଞ୍ଚଳରେ ଯେତେବେଳେ ପ୍ରାକୃତିକ ବିପର୍ଯ୍ୟୟ ହୋଇଛି, ସେ ଅଞ୍ଚଳରେ ସେ ତାଙ୍କର ସେବାକାର୍ଯ୍ୟ ଆରମ୍ଭ କରିଛନ୍ତି । ସେତେବେଳେ ରମ୍ଭାରେ ସେ ଗୋଟିଏ ଅନାଥ ଶିଶୁସଦନ ମଧ୍ୟ ପ୍ରତିଷ୍ଠା କରିଥିଲେ ।

ତାଙ୍କର ଜୀବନବ୍ୟାପୀ ସେ ଓଡ଼ିଶାର ଅନାଥ ଶିଶୁ ଓ ଆଦିବାସୀମାନଙ୍କ ଅବସ୍ଥାର ଉନ୍ନତିପାଇଁ କାର୍ଯ୍ୟ କରିଛନ୍ତି । ସେମାନଙ୍କର ସାମାଜିକ ଓ ଆର୍ଥନୀତିକ ଅବସ୍ଥାର ଉନ୍ନତିପାଇଁ ବାରମ୍ବାର ସରକାରଙ୍କ ନିକଟରେ ଆପତ୍ତି ଅଭିଯୋଗ କରିଛନ୍ତି । ତାଙ୍କର ଉଲ୍ଲେଖନୀୟ ସେବାକାର୍ଯ୍ୟ ପାଇଁ ୧୯୬୦ ମସିହାରେ ମିଳିତ ଜାତିସଙ୍ଘ ତରଫରୁ ବୃତ୍ତି ପାଇ ଛଅମାସ ପାଇଁ

ସେ ଯୁକ୍ତରାଷ୍ଟ୍ର ଆମେରିକାରେ ଅନାଥ ଶିଶୁ ଓ ଅବହେଳିତ ଗୋଷ୍ଠୀମାନଙ୍କ ପାଇଁ ଯେଉଁସବୁ ଅନୁଷ୍ଠାନ ଗଢ଼ାହୋଇଛି, ସେ ସମ୍ପର୍କରେ ପ୍ରତ୍ୟକ୍ଷ ଜ୍ଞାନଲାଭର ସୁବିଧା ପାଇଥିଲେ । ସେତେବେଳେ ସେ ଆମେରିକାର ଅନୁନ୍ନତ ରାଜ୍ୟ ଜର୍ଜିଆ, ଓକ୍‌ଲାହୋମା ପ୍ରଭୃତିକୁ ଯାଇ ସେଠାରେ ଅବହେଳିତ ଲୋକ-ମାନଙ୍କର ଥଇଥାନ ଅବସ୍ଥା ସମ୍ପର୍କରେ ଦେଖିଥିଲେ । ଯୁକ୍ତରାଷ୍ଟ୍ର ଆମେରିକାରୁ ଫେରି ଆମ ଦେଶରେ ଅନାଥ ଲୋକମାନଙ୍କର ଥଇଥାନ ସମ୍ପର୍କରେ ଭାରତ ସରକାରଙ୍କୁ ଗୋଟିଏ ରିପୋର୍ଟ ଦାଖଲ କରିଥିଲେ । କିନ୍ତୁ କେନ୍ଦ୍ର ସରକାରଙ୍କ ଆର୍ଥିକ ସମ୍ବଳ ଅଭାବରୁ ତାହା କାର୍ଯ୍ୟକାରୀ ହୋଇପାରି ନ ଥିଲା ।

ଆମ ଦେଶରେ ହରିଜନମାନଙ୍କୁ ଅସ୍ପୃଶ୍ୟ ଓ ଅବହେଳିତ ଅବସ୍ଥାରେ ରଖାଯାଇଥିଲା, ସେମାନେ ସମାଜରୁ ଉପଯୁକ୍ତ ମର୍ଯ୍ୟାଦା ପାଇବାରେ ବଞ୍ଚିତ ଥିଲେ । ସମଗ୍ର ଦେଶର ଜନସଂଖ୍ୟାରେ ସେମାନଙ୍କର ସଂଖ୍ୟା କିଛି କମ୍ ନ ଥିଲା, ତେଣୁ ସେମାନଙ୍କୁ ସମାଜରେ ଉପଯୁକ୍ତ ମର୍ଯ୍ୟାଦା ଦେବାପାଇଁ ମହାତ୍ମାଗାନ୍ଧି ସମଗ୍ର ଦେଶରେ ହରିଜନ ଆନ୍ଦୋଳନ ଚଳାଇଥିଲେ । ସେତେବେଳେ ସମଗ୍ର ଦେଶରେ ଏହାର ପ୍ରଭାବ ପଡ଼ିଥିଲା । ଏହାର ପ୍ରଭାବରେ ହରିଜନମାନଙ୍କର ଅବସ୍ଥାର ଉନ୍ନତି ପାଇଁ ଓଡ଼ିଶାର ହରିଜନ ସେବକ ସଙ୍ଘ ନାମରେ ଗୋଟିଏ ଅନୁଷ୍ଠାନ ଗଢ଼ା ଯାଇଥିଲା । ଆଚାର୍ଯ୍ୟ ହରିହର ଏ ସଙ୍ଘର ସଭାପତି ଏବଂ ଶ୍ରୀ ଶ୍ୟାମସୁନ୍ଦର ମିଶ୍ର ସାଧାରଣ ସମ୍ପାଦକ ଥିଲେ । ସେ ୧୮ବର୍ଷ ଧରି ଏହି ସଙ୍ଘର ସାଧାରଣ ସମ୍ପାଦକ ଭାବରେ କାର୍ଯ୍ୟ ତୁଲାଇଥିଲେ । ଏହି ସଂଘର ମୁଖ୍ୟ ଉଦ୍ଦେଶ୍ୟ ଥିଲା ହରିଜନ ପିଲାମାନଙ୍କୁ ଖାଦ୍ୟ, ପୋଷାକ, ପାଠ୍ୟ ଉପକରଣ ଯୋଗାଇ ସେମାନଙ୍କର ଶିକ୍ଷାର ଉନ୍ନତି କରିବା; ତେଣୁ ଓଡ଼ିଶାର ବିଭିନ୍ନ ସଂସ୍ଥା ତରଫରୁ ହଷ୍ଟେଲ-ମାନ ଖୋଲାଯାଇ ସେମାନଙ୍କର ପଢ଼ିବାର ସୁବିଧା କରି ଯାଇଥିଲା । ସେହି-

ପରେ ଆଦିବାସୀ ପିଲମାନଙ୍କର ଉନ୍ନତି ପାଇଁ ଓଡ଼ିଶାର ଆଦିବାସୀ ବହୁଳ ଅଞ୍ଚଳରେ ଆଶ୍ରମମାନ ଖୋଲି ମାଗଣାରେ ଶିକ୍ଷା ଦେବାର ବ୍ୟବସ୍ଥା କରାଯାଇଛି । ବର୍ତ୍ତମାନ ହିନ୍ଦ୍ ସେବକ ସଂଘ ତରଫରୁ କୋରାପୁଟ ଜିଲ୍ଲାର ରାୟଗଡ଼ାଠାରେ ଏହିପରି ଗୋଟିଏ ଆଶ୍ରମ ସ୍ଥାପିତ ହୋଇଛି, ଯେଉଁଠାରେ ବର୍ତ୍ତମାନ ଆଦିବାସୀ ପିଲମାନେ ରହି ଶିକ୍ଷାର ସୁଯୋଗ ପାଇଛନ୍ତି । ଅନାଥ ଶିଶୁମାନଙ୍କର କଲ୍ୟାଣପାଇଁ କଟକର ଚୌଦ୍ୱାର-ଠାରେ ଗୋଟିଏ ଶିଶୁ ସଦନ ସଂଘ ମଧ୍ୟ ପରିଚାଳନାରେ କାର୍ଯ୍ୟ କରୁଛି ।

ଶ୍ରୀ ମିଶ୍ର ୬ବର୍ଷ କାଳ ଉତ୍କଳ ବିଶ୍ୱବିଦ୍ୟାଳୟର ସିନେଟ୍‌ର ସଭ୍ୟ ଥିଲେ । ସିନେଟ୍‌ର ସଭ୍ୟ ହିସାବରେ ସେ ଉତ୍କଳ ବିଶ୍ୱବିଦ୍ୟାଳୟର ପବ୍ଲିକ୍ ଆକାଉଣ୍ଟସ୍ କମିଟିର ମେମ୍ବର ଥିଲେ । ଉତ୍କଳ ବିଶ୍ୱବିଦ୍ୟାଳୟର ସମସ୍ତ ଖର୍ଚ୍ଚର ଯଥାର୍ଥତା ସମ୍ପର୍କରେ ଶ୍ରୀ ମିଶ୍ର ସବୁବେଳେ ଉପଯୁକ୍ତ ପରାମର୍ଶ ଦେଉଥିଲେ ।

ସ୍ୱାଧୀନ ଓଡ଼ିଶା ଗଠନ ପରେ ଓଡ଼ିଶାର ଓଡ଼ିଆ ଭାଷାଭାଷୀ କେତେକ ଅଞ୍ଚଳ ବିହାର, ମଧ୍ୟପ୍ରଦେଶ ପରି କେତେକ ରାଜ୍ୟ ସହିତ ମିଶି ରହିଥିଲା । ଅନ୍ୟ ରାଜ୍ୟ ସହିତ ମିଶି ରହିବା ଫଳରେ ସେ ଅଞ୍ଚଳରେ ବସବାସ କରୁଥିବା ଓଡ଼ିଆମାନଙ୍କର ଭାଷା, ସାହିତ୍ୟ, ସଂସ୍କୃତିର ବିକାଶ କ୍ଷେତ୍ରରେ ଘୋର ଅସୁବିଧା ସୃଷ୍ଟି ହେଉଥିଲା । ତେଣୁ ଓଡ଼ିଶା ସହିତ ସମସ୍ତ ଅଞ୍ଚଳର ମିଶ୍ରଣ ପାଇଁ ସେତେବେଳେ ପ୍ରବଳ ଜନ-ଆନ୍ଦୋଳନ ସୃଷ୍ଟି ହେବା ସଙ୍ଗେ ସଙ୍ଗେ ସରକାରଙ୍କ ନିକଟରେ ଏଥିପାଇଁ ଦାବୀ ଉପସ୍ଥାପିତ ହୋଇଥିଲା । ଉତ୍କଳର ବିଚ୍ଛିନ୍ନାଞ୍ଚଳର ଏକତ୍ରୀକରଣ ଉଦ୍ଦେଶ୍ୟରେ ଉତ୍କଳ ସମ୍ମିଳନୀ ଜନ୍ମ ନେଇଥିଲା । ଶ୍ୟାମସୁନ୍ଦର ବାବୁ ଉତ୍କଳ ସମ୍ମିଳନୀର ଜଣେ କର୍ମୀ ଥିଲେ ଏବଂ

୧୯୭୦ ମସିହାରୁ ୧୯୭୩ ମସିହା ପର୍ଯ୍ୟନ୍ତ ସେ ଏହି ଅନୁଷ୍ଠାନର ସାଧାରଣ ସମ୍ପାଦକ ଭାବରେ କାର୍ଯ୍ୟ କରିଥିଲେ । ଓଡ଼ିଶା ବାହାରେ ଥିବା ଓଡ଼ିଆ ଭାଷାଭାଷୀ ଅଞ୍ଚଳ ଷଡ଼େଇକଳା, ଖରସୁଆଁ, ଫୁଲଝର, ଖଡ଼ିଆଳ ପ୍ରଭୃତି ଅଞ୍ଚଳକୁ ଯାଇ ସଭାସମିତି କରି ସେ ଅଞ୍ଚଳରେ ବସବାସ କରୁଥିବା ଓଡ଼ିଆମାନଙ୍କର ଦୁଃଖ ଦୁର୍ଦ୍ଦଶା ସମ୍ପର୍କରେ ସମସ୍ତଙ୍କୁ ସଚେତନ କରିଥିଲେ ।

ଶିକ୍ଷା ହିଁ ସମାଜର ମେରୁଦଣ୍ଡ । ଉନ୍ନତ ସମାଜ ଗଠନରେ ଶିକ୍ଷାର ଅବଦାନ ଅନସ୍ୱୀକାର୍ଯ୍ୟ, ପ୍ରାଥମିକ ଶିକ୍ଷା କ୍ଷେତ୍ରରେ କାର୍ଯ୍ୟ କରୁଥିବା ପ୍ରାଥମିକ ଶିକ୍ଷକମାନଙ୍କର ଅନେକ ଅଭାବ ଅସୁବିଧା ଥିଲା । ପ୍ରାଥମିକ ଶିକ୍ଷକମାନଙ୍କର କଲ୍ୟାଣ ପାଇଁ ନିଖିଳ ଉତ୍କଳ ପ୍ରାଥମିକ ଶିକ୍ଷକ, ସମ୍ମିଳନୀ ଗଠନ କରାଯାଇ ଏହି ସମ୍ମିଳନୀ ମାଧ୍ୟମରେ ସେମାନଙ୍କର ନ୍ୟାଯ୍ୟ ଦାବୀକୁ ସରକାରଙ୍କ ନିକଟରେ ଉପସ୍ଥାପିତ କରାଯାଉଥିଲା । ଶ୍ରୀଯୁକ୍ତ ମିଶ୍ର ଦଶ ବର୍ଷରୁ ଊର୍ଦ୍ଧ୍ୱ ସମୟ ଏହି ସମ୍ମିଳନୀର ସାଧାରଣ ସମ୍ପାଦକ ଭାବରେ କାର୍ଯ୍ୟ କରି ପ୍ରାଥମିକ ଶିକ୍ଷକମାନଙ୍କର କଲ୍ୟାଣ ପାଇଁ ଅନେକ କାର୍ଯ୍ୟ କରିଥିଲେ ।

ସମାଜର ଦୁର୍ବଳ, ଅବହେଳିତ, ଅକର୍ମଣ୍ୟ ଲୋକମାନଙ୍କର ସେବାରେ ସେ ଆନନ୍ଦ ଅନୁଭବ କରୁଥିଲେ । ଭାରତର ସମ୍ବିଧାନ ପ୍ରତି ସେ ଯଥେଷ୍ଟ ସମ୍ମାନ ପ୍ରଦର୍ଶନ କରୁଥିଲେ । ଯେତେବେଳେ ଯେ କୌଣସି ଅବସ୍ଥାରେ ଲୋକମାନଙ୍କୁ ସେମାନଙ୍କର ସାମ୍ବିଧାନିକ ଅଧିକାରରୁ ବଞ୍ଚିତ କରାଯାଇଛି, ସେତେବେଳେ ଶ୍ରୀ ମିଶ୍ର ସରକାରଙ୍କ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଛନ୍ତି । ବାର୍ଷିକ ବଜେଟ୍ ପ୍ରତ୍ୟେକ ଜାତୀୟ ସରକାରଙ୍କର ଗୋଟିଏ ଉଲ୍ଲେଖନୀୟ ଘଟଣା । ବଜେଟ୍ ଘୋଷଣା ସମୟରେ ଯେତେ-ବେଳେ ସରକାର ଦରିଦ୍ର ଲୋକମାନଙ୍କର ସ୍ୱାର୍ଥହାନି ହେଲାପରି

କୌଣସି ସୂଚନା ମିଳନ୍ତୁ ସେତେବେଳେ ସନ୍ତ୍ରସମିତ ଏବଂ ସମ୍ବାଦପତ୍ର ଇତ୍ୟାଦି ମାଧ୍ୟମରେ ସେ ତାର ପ୍ରତିବାଦ କରିଛନ୍ତି । ଭାରତରେ ଶିକ୍ଷାନୀତି, ନାଗରିକ ଅଧିକାର ଇତ୍ୟାଦି ସମ୍ପର୍କରେ ତାଙ୍କର ବହୁ ସୁଚିନ୍ତିତ, ସାରଗର୍ଭକ ପ୍ରବନ୍ଧ ଦୈନିକ ସମ୍ବାଦପତ୍ର ଏବଂ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ ହୋଇଛି । ତାଙ୍କର ସମସ୍ତ ରଚନାବଳୀ ମାଧ୍ୟମରେ ସେ ନିର୍ଭିକ ଭାବରେ ବାସ୍ତବ ସତ୍ୟର ଅବତାରଣା କରିଛନ୍ତି ।

ଶ୍ରୀଯୁକ୍ତ ମିଶ୍ରଙ୍କ ଜୀବନ ଖୁବ୍ ସରଳ ଓ ନିରାଡମ୍ବର, ଜୀବନରେ ସ୍ତାବକତା ବା ଅଯଥା ପ୍ରଶଂସାକୁ ସେ କେବେହେଲେ ପସନ୍ଦ କରି-ନାହାନ୍ତି । ସେ ପ୍ରତ୍ୟକ୍ଷ ଭାବରେ ସନ୍ଦର୍ଭ ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେଇନାହାନ୍ତି ପରୋକ୍ଷ ଭାବରେ ସ୍ୱାଧୀନତା ଆନ୍ଦୋଳନ ପାଇଁ ଗଠନ-ମୂଳକ କାର୍ଯ୍ୟ କରିଛନ୍ତି । ହିନ୍ଦ୍ ସେବକ ସଙ୍ଘର ଜଣେ ସକ୍ରିୟ ସଭ୍ୟ ଭାବରେ ସେ ଭାରତର ବହୁ ଭୁଙ୍ଗ ଜନନାୟକମାନଙ୍କର ସମ୍ପର୍କରେ ଆସିବାର ସୁଯୋଗ ପାଇଥିଲେ । ଗୋପାଳକୃଷ୍ଣ ଗୋଖ୍ଲେ, ବାଳ ଗଙ୍ଗାଧର ତିଳକ, ଦେଶବନ୍ଧୁ ଚିତ୍ତରଞ୍ଜନ ଦାସ, ଲଲା ଲଜପତରାୟ ପ୍ରମୁଖ ବହୁ ଜନନାୟକଙ୍କର ଜୀବନର ଆଦର୍ଶ ଦେଶସେବାରେ ତାଙ୍କୁ ବେଶ୍ ଅନୁପ୍ରାଣିତ କରିଥିଲ । ଏହିପରି ପ୍ରାତଃସ୍ମରଣୀୟ ଜନ-ନାୟକମାନଙ୍କର ଘଟଣାବହୁଳ ଜୀବନୀକୁ କ୍ଷୁଦ୍ର ପ୍ରବନ୍ଧ ଆକାରରେ "ପ୍ରେରଣାଉତ୍ସ" ନାମକ ଏକ ପୁସ୍ତକରେ ପ୍ରକାଶ କରିଛନ୍ତି ।

୧୯୫୪ ମସିହା ପର୍ଯ୍ୟନ୍ତ ସେ ଅନୁଷ୍ଠାନର ଜଣେ ସକ୍ରିୟ କର୍ମୀ ଭାବରେ ବିଭିନ୍ନ କ୍ଷେତ୍ରରେ କାର୍ଯ୍ୟ କରି ଆସିଛନ୍ତି । ୧୯୫୪ ମସିହାରୁ ତାଙ୍କର ଶରୀର କ୍ରମଶଃ ରୁଗ୍ଣ ହେବାରୁ ସେ ପ୍ରତ୍ୟକ୍ଷ ଭାବରେ କୌଣସି ସାମାଜିକ ସେବାକାର୍ଯ୍ୟ କରିପାରୁ ନ ଥିଲେହେଁ

ତାଙ୍କର ମାନସିକ ବଳ ପୂର୍ବପରି ଅକ୍ଷୁଣ୍ଣ ରହିଛି । ବର୍ତ୍ତମାନ ୭୭ ବର୍ଷ ବୟସରେ ଏଇ ରୁଗ୍‌ଣ ଶରୀରରେ ଫେବୃୟାରୀ ମାସରେ ତାଙ୍କୁ "ହିନ୍ଦ୍ ସେବକ ସଙ୍ଘ"ର ସଭାପତି ଭାବରେ ନିଯୁକ୍ତ ଦିଆ-ଯାଇଛି । ବର୍ତ୍ତମାନ ସଙ୍ଘର ସେ ସବୁଠାରୁ ବୟୋଜ୍ୟେଷ୍ଠ କର୍ମୀ । ତାଙ୍କର ସେବା, ତ୍ୟାଗ ଏବଂ କର୍ମନିଷ୍ଠା ହିଁ ତାଙ୍କୁ ସର୍ବଭାରତୀୟ ସ୍ତରରେ ସଙ୍ଘର ଉଚ୍ଚତମ ଶିଖରକୁ ଉନ୍ନୀତ କରିପାରିଛି । ଏହା ଓଡ଼ିଆ ଜାତି ପକ୍ଷରେ ଗର୍ବ ଓ ଗୌରବର ବିଷୟ । ତାଙ୍କର ରୁଗ୍‌ଣ ଅବସନ୍ନ ଶରୀରରେ ଏଇ ଗୁରୁଦାୟିତ୍ୱ ତାଙ୍କ ମନରେ ନୂତନ କର୍ମ ପ୍ରେରଣାର ପ୍ରବାହ ସୃଷ୍ଟି କରିଛି ।



# ନୃତ୍ୟଗୁରୁ ପଙ୍କଜ ଚରଣ ଦାସ

ଶ୍ରୀ ଶୁଭ ନାରାୟଣ ସ୍ୱାଇଁ

ଯୁଗ ଯୁଗ ଧରି କୋଟି କୋଟି ଜୀବନର ଅଜ୍ଞାତ ଇତିହାସକୁ ବକ୍ଷରେ ଧାରଣ କରି ଏହି ସମୟର ସ୍ରୋତ କେତେ ବେଗରେ ଆଗେଇ ଚାଲିଛି ସତେ ! ସେହି ହିଁ ଏ ମଣିଷ ଜୀବନର ସକଳ ସୁଖ ଦୁଃଖ ଓ ଝଡ଼ ଝଞ୍ଜାର ମୂକ ସାକ୍ଷୀ ।

ଦେବକୀଙ୍କ ନନ୍ଦନ ଯଶୋଦାଙ୍କ କୋଳରେ, ଆଉ କାଉ ବସାରେ କୋଇଲି ଛୁଆ ବଢ଼ିଲା ପରି, କ୍ଷେତ୍ରମଣିଙ୍କର ଅନ୍ତରଲଉଡ଼ ପଙ୍କଜଙ୍କର ଜୀବନର ପରିପ୍ରକାଶ ଘଟିଥିଲା ପୁରୀ ଟାଉନ୍‌ର ଗୋଟିଏ ଦେବଦାସୀ ଘରେ ।

ପଙ୍କଜଙ୍କ ମା କ୍ଷେତ୍ରମଣି । ସେତେବେଳେ ସେ ଥାଆନ୍ତି ଅନ୍ତଃସତ୍ତ୍ୱା । ଗର୍ଭରେ ତାଙ୍କର ସାତମାସର ସନ୍ତାନ । ହଠାତ୍ ଏତିକିବେଳେ ବୈଧବ୍ୟର ବଜ୍ରପାତ ହୁଏ କ୍ଷେତ୍ରମଣିଙ୍କ ମୁଣ୍ଡରେ । କଣ କରିବେ ସେ । କୁଆଡ଼େ ଯିବେ । ଚଉଦିଗ ତାଙ୍କୁ ଅନ୍ଧାର ଦେଖାଗଲା । ଏପରି ଏକ ଅସମୟରେ ସ୍ୱାମୀ ତାଙ୍କୁ ଚିରଦିନ ପାଇଁ ଛାଡ଼ି ସେପୁରକୁ ବାହୁଡ଼ି ଗଲେ । ପ୍ରାଣ ତାଙ୍କର ହା ହତାଶରେ ଜଳି ଉଠିଲା । ଆଗକୁ ପଛକୁ କେହି ନାହିଁ । ଗାଁକୁ ଫେରି ଯିବାର ଉପାୟ ମଧ୍ୟ ନଥିଲା । ବଡ଼ ନିରାଶ୍ରୟା ହୋଇ, ପୁରୀ ରାଧାବଲ୍ଲଭ ମଠର ଏକ ମନ୍ଦିର ଦ୍ୱାରରେ ବସି ସେ ନିଜର ଦୁଃଖ ସେହି ଜଗତର ନାଥ ଜଗନ୍ନାଥଙ୍କୁ ଜଣାଉଥାନ୍ତି ।

ଆଖିରେ ତାଙ୍କର ଅମାନିଆ ଲୁହଧାର । ତାଙ୍କ ଦୁଃଖରେ ଟିକେ ଆହା କହିବାକୁ କେହି ନାହିଁ । ଦୁଃଖର ସେହି ଘନ କୁହୁଡ଼ିରେ ତାଙ୍କ ଜୀବନର ଚଲାପଥ ସତେ ଯେପରି ଲୁଚି ଯାଇଛି । ଏପରି ଦୁର୍ଦ୍ଦିନରେ ସେହି ପତିତପାବନ ଚକାନୟନହିଁ କେବଳ ତାଙ୍କର ଭରସା ।

ବଡଠାକୁରଙ୍କ ଦେବଦାସୀ ମାନେ ତାଙ୍କର ସେବାପୂଜା ଓ ମାଗୁଣି ଇତ୍ୟାଦି ଶେଷକରି, ବ୍ୟାବଲ୍ଲଭ ମଠର ସେହି ଚମ୍ପୀବ ପାଖରେ ଆସି ନିଜ ନିଜର ପାଉଣାକୁ ଭାଗବାଣ୍ଟ କରନ୍ତି ।

ଠିକ୍ ଏତିକିବେଳେ ଜଗନ୍ନାଥଙ୍କର ଜନୈକା ଦେବଦାସୀ ଫକଣ୍ଡି ମାହାରୀ ଆସି, ଦୁଃଖିନୀ କ୍ଷେତ୍ରମଣିଙ୍କ ପାଖରେ ଦଣ୍ଡାୟମାନ ହୋଇ ପ୍ରଶ୍ନ କଲେ—

ତୁ କିଏ ମା, ?······

କାହିଁକି ଏପରି କାନ୍ଦୁଛୁ ?······

ଏଇ ଦୁଇପଦ କଥା, କ୍ଷେତ୍ରମଣିଙ୍କ ହାହାକାରମୟ ପ୍ରାଣରେ ଯେତେ ସେପରି ମାୟା ମମତାର ବାରିଧାରା ସୃଷ୍ଟି କରିଥିଲା । ଆଖିର ଲୁହଧାର ତାଙ୍କର ପୂର୍ବାପେକ୍ଷା ଦ୍ୱିଗୁଣିତ ହୋଇ ଉଠିଥିଲା । ଜୀବନର ଏତେବଡ ଆଘାତକୁ ସେ କିପରି ସହିବେ, ସେ ଧୈର୍ଯ୍ୟ ସେତେବେଳେ କ୍ଷେତ୍ରମଣିଙ୍କର ନଥିଲା । ଫଳରେ ଗୋଟିଏ ନିରୀହ ଶିଶୁସମ ସେ ସେହି ଦେବଦାସୀଙ୍କ ନିକଟରେ ଖୋଲି କାନ୍ଦିବାକୁ ଲାଗିଲେ ।

ତାପରେ···ପୁଣି ପୂର୍ବପରି ସେହି ଏକା ପ୍ରଶ୍ନ—

କହ ମା, କହ ତୁ କିଏ।···

କଣ ପାଇଁ ତୁ ଏଠାରେ କାନ୍ଦୁଛୁ ?···

ଉତ୍ତର ମିଳିଲା—

ମୁଁ ଗୋଟିଏ ହତଭାଗିନୀ । ଅସମୟରେ ଆଜ ମୁଁ ସ୍ୱାମୀଙ୍କୁ ହରାଇ ବୈଧବ୍ୟ ଯନ୍ତ୍ରଣାରେ ଛଟପଟ ହେଉଛି । ଗର୍ଭରେ ମୋର ସାତ ମାସର ସନ୍ତାନ । ତାକୁ ଛାଡିଦେଲେ ଦୁନିଆରେ ଆଜ ମୋର କେହି ନାହିଁ । ଏବେ ମୁଁ କିପରି ବଞ୍ଚିବି । ମୋର ଗର୍ଭ ସନ୍ତାନକୁ କିପରି ବଞ୍ଚାଇବି । ଏଇକଥା ଭାବିଲା ବେଳକୁ, ମୁଁ ନିରୁପାୟ ହୋଇ ଉଠୁଛି । ମୋତେ କିଛି ବୁଦ୍ଧି ଦେଖାଯାଉନାହିଁ ।···

× × ×

କ୍ଷେତ୍ରମଣିଙ୍କ ସ୍ୱାମୀ ଧର୍ମୁଚରଣ ଦାସ । ସେ ଥିଲେ ପୁଲିସ ବିଭାଗର ଜଣେ କନେଷ୍ଟବଲ । ପାର୍ବତୀ ଧର ସେହି ପୁରୀ ଟାଉନଥିଲା ତାଙ୍କର କର୍ମକ୍ଷେତ୍ର । ଜନ୍ମ ସ୍ଥାନ କଟକ ଜିଲ୍ଲାର ଅସୁରେଶ୍ୱର ପାଖାପାଖି

ମଣିପୁର ଗାଁ । ସେହି ଗାଁର ଗୋଟିଏ କରଣ ପରିବାରରେ ଧର୍ମୁ ଚରଣଙ୍କ ଜନ୍ମ ।

ଧର୍ମୁ ପୁରୀରେ ଥିଲାବେଳେ, ତାଙ୍କ ଘର ଭାଇଙ୍କ ମଧ୍ୟରେ ମନ ଫଟାଫଟି ହେଲା । ମନ ନମିଳିବାରୁ ସମସ୍ତେ ଅଲଗା ଅଲଗା ହୋଇଗଲେ । ଏହାପରେ ସ୍ୱାମୀଙ୍କ ସାଙ୍ଗରେ ଆସି ପୁରୀଧାମରେ କଷ୍ଟୁଦିନ କଟାଇବାକୁ କ୍ଷେତ୍ରମଣିଙ୍କର ମନ ଉଚ୍ଛନ୍ନ ହେଲା । ସ୍ୱାମୀଙ୍କ ଆଗରେ ତେଣୁ ସେ ନିଜର ମନକଥା ଜଣାଇଲେ । ତାଙ୍କ ମନକାମନା ପୂର୍ଣ୍ଣହେଲା । ଭାଇ ଭାଗ ପରେ ପରେ ଧର୍ମୁ କ୍ଷେତ୍ରମଣିଙ୍କୁ ଧରି ପୁରୀ ଚାଲି ଆସିଲେ । ଠିକ୍ ସେତେବେଳେ କ୍ଷେତ୍ରମଣି ଥିଲେ ଅନ୍ତଃସତ୍ତ୍ୱା । ଗର୍ଭରେ ତାଙ୍କର ପାଞ୍ଚ ମାସର ସନ୍ତାନ । ଶ୍ରୀକ୍ଷେତ୍ରରେ ସେହି ଦେହିଷ୍ଠ ସନ୍ତାନଟି ଭୂମିଷ୍ଠ ହେବ । କି ଭାଗ୍ୟ କ୍ଷେତ୍ର-ମଣିଙ୍କର । ଆନନ୍ଦରେ ସେ ଅଧୀର । ଜଗତର ନାଥ ଜଗନ୍ନାଥଙ୍କ ନିକଟରେ ତେଣୁ ସେ କୃତଜ୍ଞ କୃତଜ୍ଞ ।

ଫକୀର ମାହାନ୍ତି କ୍ଷେତ୍ରମଣିର ସେହି କରୁଣ କାହାଣୀକୁ ଶୁଣିବା ମାତ୍ରେ, ଯେତେ ଯେପରି ତାଙ୍କ ପ୍ରାଣରେ ଦୟାର ସାଗର ଉଚ୍ଛୁଳି ଉଠିଲା । ଫଳରେ ସେ ଅତି ସ୍ନେହରେ, ଅତି ଆଦରରେ କ୍ଷେତ୍ରମଣିଙ୍କୁ ନିଜ ଘରକୁ ନେଇଥିଲେ ।

କ୍ରମେ ଦିନ ଗଡ଼ିଚାଲିଲା । ଫକୀର ମାହାନ୍ତିଙ୍କ ଘରର ସବୁକିଛି ପାଇଟି କରିବାରେ କ୍ଷେତ୍ରମଣି ଅଭ୍ୟସ୍ତ ହୋଇଗଲା । ରତନା ମାହାନ୍ତି ଓ ଶାନ୍ତା ମାହାନ୍ତି ନାମରେ ତାଙ୍କର ଆଉ ଦୁଇ ଭଉଣୀ ମଧ୍ୟ ସେହି ଘରେ ଥିଲେ । ଫଳରେ ଏଇ ତିନିଭଉଣୀଙ୍କର ପ୍ରାୟ ଅଧିକାଂଶ କାମ କ୍ଷେତ୍ର-ମଣିଙ୍କୁ କରିବାକୁ ହେଉଥିଲା ।

ମାହାନ୍ତି ପରିବାର ଖୁବ୍ ଧନାଢ୍ୟ ଥିଲେ । ଟଙ୍କା ପଇସା ଓ ଧାନ ଚାଉଳରେ ସେତେବେଳେ ସେମାନେ ଚାଲୁଥିଲେ କହିଲେ ଚଳେ । ଘରର ଝାଡୁଆ, କୁଟା, ବାସି ପାଇଟି, ବାସନ କୁସନ ମଜାମଜି, ସବୁ କାମରେ କ୍ଷେତ୍ରମଣି ବାଜିକଣା, ତାଙ୍କ କର୍ତ୍ତବ୍ୟନିଷ୍ଠାରେ ଘରର ସମସ୍ତେ ସନ୍ତୁଷ୍ଟ ହେବାରୁ, କ୍ଷେତ୍ରମଣି ତାଙ୍କର ଅତି ଆପଣାର ହୋଇ ଉଠିଥିଲା ।

ଶିବରାତ୍ରିର ପୂର୍ବଦିନ । ଶ୍ରୀ ଲୋକନାଥଙ୍କ ଜାଗରଣ ଏକାଦଶୀ । ସେହି ପୁଣ୍ୟ ତିଥିରେ ମାହାନ୍ତି ଘର ଠିକଣାରେ ଚୁଳିକ

ଭୂମିଷ୍ଠ ହୋଇଥିଲେ । ନନ୍ଦ ଘରେ ଗୋବିନ୍ଦ ବଢ଼ିଲାପରି ମାହାଙ୍ଗା ବଂଶରେ ତାଙ୍କ ଜୀବନର ଅଭିବୃଦ୍ଧି ଘଟିଥିଲା । ପଙ୍କଜଙ୍କ ଜାତକର ନାମ ଥିଲା ଭାଗୀରଥି । ପିଲାଦିନେ ସେ ପ୍ରାୟ ଘନ ଘନ ଝାଡ଼ା ରୋଗରେ ଆକ୍ରାନ୍ତ ହୋଇ ବଡ଼ ଦୁର୍ବଳ ଥିଲେ । ତେଣୁ ଅନେକ ଲୋକ ତାଙ୍କୁ ଅତି ଶ୍ରଦ୍ଧାରେ ହଗୁରା ହଗୁରା ଡାକୁଥିଲେ । ତାଙ୍କର ବନ୍ଧୁମାନେ ଡାକୁଥିଲେ ବୁଲ୍‌ବୁଲ୍ । କାରଣ ସେ ଖୁବ ସଙ୍ଗୀତ ପ୍ରିୟ ଥିଲେ । ଅଧିକାଂଶ ବେଳେ ସେ ଗୁଣୁଗୁଣୁ ସ୍ୱରରେ କିଛି ନା କିଛି ଗାଇବାରେ ଅଭ୍ୟସ୍ତ ଥିଲେ । ପ୍ରାୟ ଅନେକ ଯାତ୍ରା ସଙ୍ଗୀତକୁ ସେ ଶୁଣି ଶୁଣି ମୁଖସ୍ଥ କରିପାରୁଥିଲେ । ତାଙ୍କ କଳାପ୍ରିୟ ଜୀବନର ଏହାହିଁ ଥିଲା ପ୍ରାରମ୍ଭିକ ସୂଚନା ।

ପୁରୀ ମାର୍କଣ୍ଡେଶ୍ୱର ସାହିର ଚଟଶାଳୀ । ପଙ୍କଜଙ୍କ ସ୍ମୃତିରେ ଦେବ ମନ୍ଦିର ଭଳି ଏବେବି ନାଚିଉଠେ । ଆଜି ତାଙ୍କର ପ୍ରଥମ ଗୁରୁ ନଟୁ ମାଷ୍ଟ୍ରେ ଯିଏକି ତାଙ୍କ ହାତରେ ପ୍ରଥମେ ଖଡ଼ିଧରାଇ ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ଲେଖି ଶିଖାଇଥିଲେ ସେ ମଧ୍ୟ ଆଜି ତାଙ୍କର ଚିର ନମସ୍ୟ ହୋଇ ରହିଛନ୍ତି ।

ଚଟଶାଳୀର ଚଟମାନଙ୍କ ମଧ୍ୟରେ ପଙ୍କଜ ଥିଲେ ବଡ଼ଚଟ । ସେ ଖୁବ ମେଧାବୀ ଥିଲେ । ତାଙ୍କର ଅସାଧାରଣ ପ୍ରତିଭା ଦେଖି ଶିକ୍ଷକ ଓ ସହପାଠୀ ବନ୍ଧୁମାନେ ଅବାକ୍ ହୋଇ ଯାଉଥିଲେ । ଚଟଶାଳୀରେ ପାଠ-ପଢ଼ାରେ ସେ ଯେପରି ପ୍ରଥମସ୍ଥାନ ଲାଭ କରୁଥିଲେ, ଗୀତ ଗାଇବାରେ ମଧ୍ୟ ସେହିପରି ପ୍ରଥମ ହେଉଥିଲେ । ସେ କାଳରେ ତାଙ୍କ ଲଳିତ ମଧୁର କଣ୍ଠସଙ୍ଗୀତ ଯେଉଁମାନେ ଶୁଣିଛନ୍ତି, ସେମାନେ ନିଶ୍ଚୟ ତାର ସ୍ୱାଦ ଉପଲବ୍ଧି କରିଥିବେ ।

‘ମାଛିଲା ଅନ୍ଧାର ରଜନୀ’ ଓ ‘ଆଦ୍ୟ ଅବତାରେ ହରି’ ଏଭଳିସବୁ ଗୀତକୁ ଚଟଶାଳୀରେ ଯେତେବେଳେ ସେ ଗାଉଥିଲେ ବାଟରେ ଚାଲିଯାଉଥିବା ଲୋକର ଗୋଡ଼ ମଧ୍ୟ ଦଣ୍ଡେ ଅଟକି ଯାଉଥିଲା । ଚଟଶାଳୀ ଜୀବନ କ୍ରମଶଃ ବର୍ଷ ପରେ ବର୍ଷ ଗଡ଼ି ଚାଲିଲା । ଯେତେବେଳେ ପଙ୍କଜଙ୍କୁ ମାତ୍ର ନଅ ବର୍ଷ ବୟସ, ସେତେବେଳେ ସିଏ ଚଟଶାଳୀରେ ହରି, ଗୁଣ, ଫେଡ଼, ମିଶା ଶେଷକରି ପୋଥି ପୁରାଣ ପଢ଼ିବାକୁ ଲାଗିଲେ । ଏତେ ଅଳ୍ପ ବୟସରେ ଏସବୁ ପାଠ ଶେଷ କରିବା ଦ୍ୱାରା ସିଏ ଯେ କେତେ ମେଧାବୀ

ଓ ପ୍ରତିଭାବାନ୍ ଥିବ ଥିଲେ ତାହା ଏହି ଗୋଟିଏ ଦୃଷ୍ଟାନ୍ତରୁ ସହଜରେ ଅନୁମେୟ ।

ପିଲାଦିନେ ପାଠପଢ଼ାରେ ତାଙ୍କର ଯେପରି ଆଗ୍ରହ ଥିଲା ସାଙ୍ଗ ସାଥୀ ମେଳରେ ଖେଳ କୌତୁକ କରିବାରେ ମଧ୍ୟ ଅନୁରୂପ ଆଗ୍ରହ ଦେଖାଉଥିଲା । ଡେଙ୍ଗା, ଡାଗର ପୁଅ, ଗୁଡ଼ି ବା ଚକ ଉଡ଼ାଇବା, ଗୁଲିଖେଳ, ଚକାଖେଳ, ପଶା ଓ ଶକୁଠା ପ୍ରଭୃତି ଖେଳ ଖେଳିବାକୁ ସେ ଖୁବ ଭଲ ପାଉଥିଲେ ।

ସନ୍ଧ୍ୟାବେଳେ ଯାଇ ଆଖଡ଼ାରେ ଭଜନ, ଜଣାଣ ଗାଇବା ଓ ନିଜେ ନାଚିବା ଥିଲା ତାଙ୍କ ଜୀବନରେ ଅନ୍ୟ ଏକ ବିଶିଷ୍ଟ ଗୁଣ । ହସି ଖୁସିରେ ଏହିପରି ଦୀର୍ଘ ଚଉଦ ବର୍ଷ ବିତିଲା । ଫକୀର ମାହାରୀଙ୍କ ଦେହାନ୍ତ ପରେ, କ୍ଷେତ୍ରମଣିଙ୍କର ଅଭାବ ସଂସାରର ଦୁଃଖ କ୍ରମଶଃ ବୃଦ୍ଧି ପାଇଲା । ଭୋକ ଉପାସର ଦାଉ କିପରି ସମ୍ଭାଳିବେ ଏଥିପାଇଁ ଦିନରାତି ତାଙ୍କ ମୁଣ୍ଡ ଘୂରିଲା । ତାଙ୍କର ଏହି ଦୁଃଖ ଦେଖି ନରସିଂହ ଦାସ ନାମକ ଜନୈକ ସାଧୁ ତାଙ୍କୁ ଗୋଟିଏ ଗାଈ ପାଳିବାକୁ ଦେଲେ । କ୍ଷେତ୍ରମଣିଙ୍କ ଜୀବନରେ ଏପରି ଏକ ଅଯାଚିତ ଦାନ, ତାଙ୍କ ଜୀବନ ଧାରଣର ପଥକୁ ସୁଗମ କରି ପାରିଥିଲା । ସେହି ଗାଈଟିକୁ ଖୁବ୍ ଯତ୍ନରେ ପାଳି ଶେଷରେ ତାର କ୍ଷୀର ବିକ୍ରୀକରି ତାଙ୍କୁ ବଞ୍ଚିରହିବାକୁ ହେଲା ।

ଷଷ୍ଠଶ୍ରେଣୀ ପାଠ ଶେଷହେବା ସଙ୍ଗେ ସଙ୍ଗେ ସେ ହାତେବନ୍ଧ ଟୋଲର ଉଚ୍ଚ ପ୍ରାଥମିକ ସ୍କୁଲରେ ଅଧ୍ୟୟନ କଲେ । ସେତେବେଳେ ସ୍ୱ ନଟବର ମହାନ୍ତି ଥିଲେ ତାଙ୍କର ପ୍ରଧାନ ଶିକ୍ଷକ । ପଙ୍କଜଙ୍କର ନାଚ, ଗୀତ ଓ ପାଠପଢ଼ା ଦେଖି ସେ ଖୁବ୍ ଖୁସି ହେଉଥିଲେ । ସେଥିପାଇଁ ସେ ତାଙ୍କୁ ଅତି ଭଲ ପାଉଥିଲେ । ପ୍ରତିବର୍ଷ ସ୍କୁଲରେ ଯେଉଁ ସବୁ ସାଂସ୍କୃତିକ କାର୍ଯ୍ୟକ୍ରମ ଅନୁଷ୍ଠିତ ହୁଏ, ସେଥିରେ ହେଉଥିବା ନାଚ ଗୀତ ଓ ଅଭିନୟ ପ୍ରଭୃତିରେ ପଙ୍କଜ ସ୍ୱତଃ ଏକ ମୁଖ୍ୟ ଭୂମିକା ଗ୍ରହଣ କରିଥାନ୍ତି ।

ଆବାଲ୍ୟରୁ ତାଙ୍କ ଜୀବନ ଥିଲା କଳାପ୍ରିୟ । ତେଣୁ ତାଙ୍କ ଘରେ ଅନ୍ୟମାନଙ୍କଦ୍ୱାରା ଯେଉଁ ନାଚ ଗୀତକୁ ଅଭ୍ୟାସ କରାଯାଉଥିଲା ସେ ସବୁକୁ ସେ ଖୁବ୍ ଆଗ୍ରହର ସହିତ ଅନୁକରଣ କରି ପାରୁଥିଲେ । ଗୀତ ଗାଇବା, ନାଚନାଚିବା ଓ ଯାତ୍ରାରେ ବିଭିନ୍ନ ଭୂମିକାରେ ଅଂଶଗ୍ରହଣ

କର ଅଭିନୟ କରିବା ପଟରେ ଯେପରି ତାଙ୍କର ଏକ ଜନ୍ମଗତ ଗୁଣ ଥିଲା । ତେଣୁ ମାତ୍ର ସାତବର୍ଷ ବୟସରେ ସେ ନିଜେ ନାଚ ଓ ଗୀତ ଗାଇ ଅନ୍ୟମାନଙ୍କୁ ଖୁସିକରି ପାରୁଥିଲେ । ଫକଣ୍ମ ମାହାରୀଙ୍କ ଭଉଣୀ ରତମ୍ନ ମାହାରୀଙ୍କ ଆଗରେ ପ୍ରାପ୍ତ ପ୍ରତିଦିନ ସେ ଏହି ପିଲା ବୟସରେ ନାଚୁଥିଲେ ଏବଂ ଗୀତ ମଧ୍ୟ ଗାଉଥିଲେ ।

ମାହାରୀ ସମ୍ପ୍ରଦାୟର ଯେଉଁ ଝିଅମାନେ ତାଙ୍କ ଘରକୁ ନାଚ ଗୀତ ଶିଖିବାକୁ ଆସୁଥିଲେ, ସେମାନଙ୍କ ସାଙ୍ଗରେ ପଙ୍କଜ ମଧ୍ୟ ନାଚୁଥିଲେ ଏବଂ ପଙ୍କଜ ଯେପରି ନାଚୁଛି ତାଙ୍କୁ ଅନୁକରଣ କରି ନାଚିବାକୁ ରତମ୍ନ ମାହାରୀ ନାଚ ଶିଖୁଥିବା ଅନ୍ୟ ଶିକ୍ଷାର୍ଥୀମାନଙ୍କୁ କହୁଥିଲେ ।

ମାହାରୀମାନଙ୍କର ନୃତ୍ୟ ଗୀତ କେବଳ ଦେବତାଙ୍କ ମନ ରଞ୍ଜନ ପାଇଁ ହୋଇଥାଏ । ଯେଉଁ ଦିନ ଯେଉଁ ମାହାରୀ ଜଣଙ୍କର ନୃତ୍ୟ ଗୀତ ପରିବେଷଣ କରିବାର ଥିବ, ସେଦିନ ସେ ଖୁବ୍ ଶୁଦ୍ଧ ପୂତ ହୋଇ ଉପବାସ ରହି ଏବଂ କୌଣସି ପୁରୁଷଙ୍କ ମୁଖ ଦର୍ଶନ ନ କରି ଦେଖାଇଲା ପାଇ ମନ୍ଦିର ବେଢ଼ାରେ ହାଜର ହୁଅନ୍ତି । ବେଳେ ବେଳେ ଜଣେ ଜଣେ ନୃତ୍ୟରତା ମାହାରୀ ନାଚି ନାଚି ଭକ୍ତିରସରେ ତନ୍ମୟ ହୋଇ ନିଜର ସତ୍ତା ହରାଇ ଶେଷରେ ସେହି ଜଗତର ନାଥ ଜଗନ୍ନାଥଙ୍କ ପାଦପଦ୍ମତଳେ ଲୀନ ହୋଇ ଯାଇଥିବାର ଶୁଣାଯାଏ ।

ମାହାରୀ ନୃତ୍ୟରେ ରାଜାଙ୍କର ପୃଷ୍ଠପୋଷକତା ମଧ୍ୟ ପ୍ରଚ୍ଛନ୍ନ ଭାବରେ ଥାଏ । ଚୈତନ୍ୟଦେବ ଆସିବା ପରେ ରାଜା ପ୍ରତାପରୁଦ୍ରଙ୍କ ସମୟରେ ଓଡ଼ିଶାରେ ରାଜନୈତିକ ଅସ୍ଥିରତା ଦେଖାଯାଇଥିଲା ।

ସେହି ସମୟରୁ ବଡ଼ ଠାକୁରଙ୍କ ରଥଯାତ୍ରା ଓ ଚନ୍ଦନ ଯାତ୍ରାରେ ମାହାରୀମାନଙ୍କ ଦ୍ୱାରା ବାହାର ସେବା କରାଗଲା । ଏହି ବାହାର ସେବାରେ ଦେବଦାସୀମାନେ ଯାଇ ନୃତ୍ୟ ଗୀତ ପରିବେଷଣ କଲେ । ଏହାଦ୍ୱାରା ମାହାରୀମାନଙ୍କର ଏହି ନୃତ୍ୟ ଗୀତ କ୍ରମଶଃ ଦେବ ମାଧ୍ୟମରୁ ଗଣ ମାଧ୍ୟମକୁ ଆସିଲା । ପରେ ପରେ ଦେଶର ଧାର୍ମିକ, ଅର୍ଥନୈତିକ ଓ ରାଜନୈତିକ କାରଣ ଇତ୍ୟାଦିରୁ ଯେଉଁ ମାହାରୀମାନେ ରାଜା ମହାରାଜାଙ୍କ ପୃଷ୍ଠପୋଷକତାରେ ଘରେ ଥିଲେ ସେମାନେ ବାହାରକୁ ଆସିଲେ ଓ ଶେଷରେ ଦେଶ ବିଦେଶକୁ ଗଲେ ।

ପୁରୀର ଯାତାଘରଗୁଡ଼ିକର ଉଦ୍ଦେଶ୍ୟ ଥିଲା, ବଡ଼ ଠାକୁରଙ୍କ ମନ୍ଦିର ଠାକୁର ରଜା ଏବଂ ଦେଶବାସୀଙ୍କୁ ବାହ୍ୟ ଶତ୍ରୁ ଆକ୍ରମଣରୁ ରକ୍ଷାକରିବା । ସେଥିପାଇଁ ଏହି ଯାତାଘରେ ଶାରୀରିକ ଶ୍ରମ ଓ କୁସ୍ତି କସରତ କରାଯାଉଥିଲା । ଯାତାଘରର ଜାଗ୍ରତ ରହୁଥିବା ଲୋକମାନଙ୍କର ମନ ବିନୋଦନ ପାଇଁ ଭେଷକୁ ପୁଅପିଲା ମଧ୍ୟ ଝିଅ ବେଶରେ ମାହାରୀମାନଙ୍କ ପରି ନାଚିଲେ । ଆଜିର ନୃତ୍ୟଗୁରୁ ପଙ୍କଜଙ୍କ ସ୍ମୃତିରେ ଏହି ଅନୁଭୂତି ଏବେ ମଧ୍ୟ ବଞ୍ଚି ରହିଛି । ତାଙ୍କ ପାହିର ଯାନଯାତ୍ରା ଓ ଲୀଳାରେ ଅଂଶ ଗ୍ରହଣ କରିବା ଏବଂ ନାଟ୍ୟଭୂମିକାରେ ସୁନ୍ଦର ଗୀତ ଗାଇବା ଦେଖି ମାଆ ତାଙ୍କର ଆନନ୍ଦରେ ଅଧୀର ହୋଇ କହୁଥିଲେ—ପଙ୍କଜ ମୋର ଗୋଟିଏ କୁକୁର ମାର୍କା ରେକର୍ଡ ।

କିନ୍ତୁ ପଙ୍କଜଙ୍କର ସଙ୍ଗୀତ ଓ ନୃତ୍ୟକଳା ପ୍ରତିଭାକୁ ଦେଖି ତେଣୁ ସମାଜ ବାଃ, ବାଃ ସ୍ୱର ଶୁଣାଉଥିଲା, ସମାଜର ସେହିମାନେ ପୁଣି ପର ମୁହୂର୍ତ୍ତରେ ତାଙ୍କୁ ଘୃଣା କରୁଥିଲେ । ସାହିର ହେଳଜାତିରେ ପଙ୍କଜ ହୁଅନ୍ତି ହରିଜନଙ୍କଠାରୁ ତଳ ଏକ ଅସ୍ପୃଶ୍ୟବ୍ୟକ୍ତି । ତାଙ୍କୁ ଅଲଗା ବସାଇ ଖାଇବାକୁ ଦିଆଯାଏ । ବାରିକ ତାଙ୍କୁ କ୍ଷୌର କରେ ନାହିଁ । ସେ କରଣ ଘରର ପିଲା ହେଲେ ମଧ୍ୟ, ଗୋଟିଏ ମାହାରୀ ପରିବାରରେ ତାଙ୍କ ଜୀବନ ଗଢ଼ି ଉଠୁଛି । ଯେବେ ଯେଉଁ ଦେବଦାସୀ ବା ମାହାରୀମାନେ ନୃତ୍ୟ ଗୀତରେ ଜଗନ୍ନାଥଙ୍କୁ ମୁଗ୍ଧ କରି ପାରୁଥିଲେ, ଘଟଣାଚକ୍ରରେ ପଡ଼ି ସେମାନେ ସେ ପଣ୍ଡିତାର ସ୍ଥାନକୁ ଖସି ଆସିଲେ ଏବଂ ସମ୍ଭବତଃ ଏଥି ପାଇଁ ପଙ୍କଜଙ୍କୁ ସେତେବେଳେ ସମାଜପତିମାନେ ଦେଖି ନାକ ଟେକୁଥିଲେ । କିନ୍ତୁ ନିନ୍ଦା ଅପମାନରେ ସେ କେବେ ଦୁଃଖ କରିନାହାନ୍ତି କି ଦୁଃଖରେ ଭାଙ୍ଗିପଡ଼ି ନାହାନ୍ତି ।

ସେ ବେଳେ ପଙ୍କଜଙ୍କର ନୃତ୍ୟଗୁରୁ ଥିଲେ ଜଗୁ ମାଷ୍ଟ୍ରେ ଓ ଭିକାରୀ ... ର । ସଙ୍ଗୀତ ଗୁରୁ ଥିଲେ ବଣି ଦାସ, ଜଗବନ୍ଧୁ ମହାନ୍ତି ଓ ରଙ୍ଗନା ... ଗୋସ୍ୱାମୀ । ଆଜି ଯାହାରେ ଅଭିନୟ ଶିଖାଇବା ପାଇଁ ଗୁରୁ ... କୃଷ୍ଣ ମୁଖାର୍ଜୀ, ବିପିନ ମୁଖାର୍ଜୀ ଓ ବଳେଇ ବାନାର୍ଜୀ ପ୍ରମୁଖ ।

... ବର୍ଷ ବୟସରେ ସେ ନିଜର ସ୍ନେହମୟୀ ଜନନୀଙ୍କୁ ହରାଇ ଥିଲେ । ... ତାଙ୍କ ଜୀବନର ରଥଚକ୍ର ଘୂରିଗଲା । ନାନା ଅଭାବ

ଅନାଟନରେ ତାଙ୍କ କଳାପ୍ରିୟ ଜୀବନର ମେରୁଦଣ୍ଡ ଭାଙ୍ଗିଯିବାକୁ ବସିଲା । ପେଟର ଭୋକକୁ ଫାଙ୍କି ଦେଇ କଳା ଜଗତରେ ଅଗ୍ରସର ସେ ଯେତେ ଚେଷ୍ଟା କଲେ ବି ଆଉ ପାରିଲେ ନାହିଁ । ଶେଷକୁ ନିଜର ଭରଣ ପୋଷଣ ପାଇଁ ପୁରୀର ମାଟିମଣ୍ଡପ ସାହିରେ ସେ ଆରମ୍ଭ କଲେ ଏକ ପାନଦୋକାନ । କିଛିଦିନ ପରେ ଦେଖାଗଲା ଯେ ପଙ୍କଜଙ୍କର ସେହି ପାନଦୋକାନଟି ଭାଂଗିଯାଇଛି । କାରଣ ଦୋକାନଟିର ବାକି କ୍ରମଶଃ ବଢ଼ି ଚାଲିଲା । ଶେଷକୁ ଆଉ ଆଦାୟ ହୋଇ ପାରିଲା ନାହିଁ । ଦୋକାନର ଲାଭାଂଶ ବୁଡ଼ିଯିବା ସଂଗେ ସଂଗେ ମୂଳ ମଧ୍ୟ ବୁଡ଼ିଗଲା ।

ଏହାର କିଛିଦିନ ପରେ ସେହି କଳାପାଗଳ ଉଦାସୀନ ପଙ୍କଜଙ୍କୁ ଦେଖିବାକୁ ମିଳିଲା ପୁରୀର ଲକ୍ଷ୍ମୀ ଟକିଜ୍ ହଲ୍‌ରେ । ହାତରେ ଗୋଟିଏ ଡାଲି ଧରି ହଲ୍ ସାରା ଡାକି ଡାକି ସେ ବିକୁଛନ୍ତି ଖିଲିପାନ । ସେହି ସିନେମା ହଲ୍ ପାଖରେ ଥିବା ଗୋଟିଏ ପାନଦୋକାନୀ ଠାରୁ ଟଙ୍କା ପ୍ରତି ପାଞ୍ଚଅଣା କମିଶନ୍‌ରେ ଖିଲିପାନ ଆଣି ସେ ଏହିପରି ପ୍ରତିଦିନ ସିନେମା ହଲ୍‌ରେ ବୁଲି ବୁଲି ବିକ୍ରି କରୁଛନ୍ତି ।

ପ୍ରତିଦିନ ସନ୍ଧ୍ୟାବେଳେ ସିନେମା ହଲ୍‌ରେ ଖିଲିପାନ ବିକିବାରେ ତାଙ୍କର ସମୟ ଯାଏ । ସକାଳ ବେଳା ପୁରୀ ମୋତିସାହି ଛକ ପାଇକପଡ଼ା ଇଷ୍ଟେଟ୍‌ର ଜଣେ ପିଅନ ଭାବେ ସେ କର୍ମରତ ଥାଆନ୍ତି ଦିନ ୧୦ଟାରୁ ୫ଟା ପର୍ଯ୍ୟନ୍ତ । ମାସିକ ଦରମା ୩୦ଟଙ୍କା ମାତ୍ର । ୫ଟା ପରେ ତରବର ହୋଇ ପୁଣି ଯାଇ ସିନେମା ହଲ୍‌ରେ ହାଜର ହୋଇ ଯିବା ମାତ୍ରେ ଆରମ୍ଭ ହୋଇଯାଏ ଖିଲ୍ ପାନ ବିକ୍ରି ।

ଏହିପରି ନାନା ଘାତ ପ୍ରତିଘାତ ଓ କେତେ ଝଡ଼ଝଞ୍ଜାକୁ ଅତିକ୍ରମ କରି ସେ ବଞ୍ଚିବା ପାଇଁ ସଂଗ୍ରାମ କରି ଚାଲିଥାନ୍ତି । ଏକଦା ଓଡ଼ିଶା ଥିଏଟର୍ସ ନାମକ ଏକ ଥିଏଟର ପାର୍ଟି ପୁରୀ ଆସିଲେ । ଜଗନ୍ନାଥ ବଲ୍ଲଭରେ ଆରମ୍ଭ ହେଲା, ସେମାନଙ୍କର ଥିଏଟର । ଦିନେ ହଠାତ୍ ସିନେମା ହଲ୍‌ରେ ପାନବିକା ବନ୍ଦ କରିଦେଇ ସେ ଚାଲିଲେ ଥିଏଟର ଦେଖିବାକୁ । ପାନ ଡାଲିଟି ମଧ୍ୟ ସାଂଗରେ ଅଛି । ଉଦ୍ଦେଶ୍ୟ ରହିଲା ଥିଏଟର ଦେଖାହେବ ପାନ ମଧ୍ୟ ବିକା ହେବ । ଥିଏଟର ଦେଖିବାରେ ସେ ଏପରି ମଜା ପାଇଥିଲେ ଯେ ପାନ ଡାଲିଟିକୁ କିଏ ଏଥି ମଧ୍ୟରେ ହସ୍ତଗତ କରି-ନେଇଛି, ସେ କିଛି ଜାଣିପାରି ନ ଥିଲେ ।

ପରଶେଷରେ କମିଶନରେ ଆଣୁଥିବା ସେହି ଖିଲପାନ ଦୋକାନ ଠାରୁ ତାଙ୍କୁ ମାଡ଼ଗାଳି ଖାଇବାକୁ ହେଲା । ଏହି ତ୍ରୁଟିପାଇଁ ତାଙ୍କୁ ପାନ-ଦୋକାନ ଆଉ ଖିଲପାନ ବିକିବାକୁ ଦେଲନାହିଁ । ତାଙ୍କର ଜୀବିକା ବୁଡ଼ିଗଲା ।

ଶେଷକୁ ପିଅନ କର୍ମହିଁ ତାଙ୍କର ଏକମାତ୍ର ସମ୍ବଳ ହୋଇ ରହିଲା । ଏତିକବେଳେ ନବଭାରତ ପତ୍ରିକାରେ ଦେଖିଲେ, ଓଡ଼ିଶା ନଭ ଥିଏଟର୍ସ ନାମକ ଏକ ଥିଏଟର ପାର୍ଟି ପାଇଁ ଅଭିନେତା, ଅଭିନେତ୍ରୀ ଆବଶ୍ୟକ, ପୂର୍ବରୁ ଅଭିଜ୍ଞତା ଥିବା କଳାକାରମାନଙ୍କୁ ଅଗ୍ରାଧିକାର ମିଳିବ । ଏଥିପାଇଁ ସାକ୍ଷାତ କରିବା ଠିକଣା ହେଲା—ଦେଶବନ୍ଧୁ ମେଡ଼ିକାଲ ହଲ, ବାଲୁ-ବଜାର, କଟକ ।

ଏହି ସମ୍ବାଦଟି ଜାଣିପାରିଲା ମାତ୍ରେ ପଙ୍କଜଙ୍କ ମନରେ ଆନନ୍ଦର ଢେଉ ଉଠିଲା । ନିଜର ବନ୍ଧୁମାନଙ୍କ ଆଗରେ ସେ ମନକଥା ପ୍ରକାଶ କଲେ । ସେମାନଙ୍କଠାରୁ ଏଥିପାଇଁ ବହୁତ ଉତ୍ସାହ ଓ ପ୍ରେରଣା ମିଳିଲା । ଫଳରେ ଆଉ କାଳବିଳମ୍ବ ନ କରି ସେହି ପିଅନ ପୋଷାକ ପିନ୍ଧି ଢାକଚେର ଗାଡ଼ିରେ ଯାଇ ସେ ରାତି ୨ଟାରେ କଟକରେ ପହଞ୍ଚିଲେ । ରାତି ପାହିଲା, ସକାଳ ହେଲା । ତା'ପରେ ଷ୍ଟେସନରୁ ପଚାରି ପଚାରି ଚୁଙ୍ଗି ଯାଇ ବାଲୁବଜାରର ସେହି ଦେଶବନ୍ଧୁ ମେଡ଼ିକାଲ ହଲରେ ପହଞ୍ଚିଲେ ଭୋର ସମୟ । ଜଣେ ଭଦ୍ରଲୋକ ଗୁଡ଼ାଖୁରେ ଦାନ୍ତ ଘଷି ଘଷି ଆସି ତାଙ୍କୁ ପ୍ରଶ୍ନ କଲେ—

କାହାକୁ ଖୋଜୁଛନ୍ତି ?

ଏଇ ପ୍ରଶ୍ନର ଉତ୍ତର ଦେବାକୁ ଯାଇ ସେ ସଂକ୍ଷେପରେ ସବୁକଥା କହିପକାଇ ଥିଲେ । ଫଳରେ ଉତ୍ତର ମିଳିଲା, ଟିକିଏ ଅପେକ୍ଷା କରନ୍ତୁ । କବିରାଜ ରାଧାରମଣ ବାବୁ ଆସନ୍ତୁ ।

କିଛି ସମୟ ଅପେକ୍ଷା କରିବାକୁ ହେଲା । ତା'ପରେ କବିରାଜ ରାଧାରମଣ ବାବୁ ଆସିଲେ । ପଙ୍କଜଙ୍କୁ ଦେଖି ସେ ଟିକିଏ ଖୁସି ହୋଇଗଲା ପରି ମନେହେଲା । ସେ ତାଙ୍କୁ ଗୁଡ଼େଇ ଭୁଡ଼େଇ କେତେ କ'ଣ ପ୍ରଶ୍ନ କଲେ । ଆଉ ଜଣେ କଳାକାର ଶୈଳୀରେ ପଙ୍କଜ ତାଙ୍କ ଆଗରେ ପ୍ରଶ୍ନଗୁଡ଼ିକର ଉତ୍ତର ଦେଇ ଚାଲିଲେ । ତା'ପରେ ସେ ପଙ୍କଜଙ୍କୁ ଗୋଟିଏ

ଗୀତ ଗାଇବାକୁ ଅନୁରୋଧ କରିଥିଲେ । ତାଙ୍କ ଅନୁରୋଧ ରକ୍ଷା କରି ସେ ଗାଇବାକୁ ଆରମ୍ଭ କଲେ —

"ଚନ୍ଦ୍ରମୁଖ ଚିର ସୁନ୍ଦର ହେ
ଚକିତେ ଚମକ ଆସିଲୁ କି ।"

ଗୀତ ଗାଇବା ଶୁଣି ତାଙ୍କର ଉପରେ କ'ଣ ହୃଦ୍‌ବୋଧ ହେଲା କେଜାଣି, ତାପରେ ସେ ତାଙ୍କ ବାଖରାବାଦସ୍ଥ ଘରକୁ ତାଙ୍କୁ ସାଙ୍ଗରେ ଧରି ଗଲେ । ସେଠାରେ ଖାଇବା ପିଇବାକୁ ଦେଲେ । ତାଙ୍କର କେତେ-ଜଣ ନାରୀ ଅଭିନେତ୍ରୀ ଆବଶ୍ୟକ ଥିବାରୁ ସେ ପଙ୍କଜଙ୍କୁ ଧରି ପୁରୀ ଯାତ୍ରା କଲେ । ପୁରୀରେ ପହଞ୍ଚିବା ମାତ୍ରେ ସେ କେତେଜଣ ନାରୀ ଅଭିନେତ୍ରୀଙ୍କୁ ଡାକି ଆଣି ରାୟବାବୁଙ୍କ ସଙ୍ଗେ ସାକ୍ଷାତ କରାଇଲେ ଏବଂ ସେମାନଙ୍କ ମଧ୍ୟରୁ ମୁକ୍ତା, ଇନ୍ଦୁମତୀ ଓ ବାଲା ଏହି ତିନିଜଣ ଅଭିନେତ୍ରୀଙ୍କୁ ଧରି ପୁନଶ୍ଚ ସେମାନେ କଟକ ଫେରି ଆସିଲେ ।

ବାଲିପଦାର ହରିଶ ଦାସ ଥିଲେ ଏହି ନଉପଡ଼ା ଥିଏଟରର ସତ୍ତ୍ୱାଧିକାରୀ । ସେ ମହାଶୟ ଆସିଲେ । ତାଙ୍କ ପରାମର୍ଶ କ୍ରମେ ଥିଏଟର ପାର୍ଟି ଯାଇ ମୟୂରଭଞ୍ଜ ପାଲ୍‌ବଣିର ଏକ ଘୃତ ଘରେ ଆରମ୍ଭ କଲା ତାଙ୍କର ରିହର୍ସାଲ । କିଛିଦିନ ପରେ କଟକରୁ କେତେ ଜଣ ଅଭିନେତା ଓ ଅଭିନେତ୍ରୀ ଯାଇ ସେଠାରେ ପହଞ୍ଚିଲେ । ସେମାନଙ୍କ ମଧ୍ୟରେ ଶ୍ରୀ ବଳନ ଦାସ ଓ ଶ୍ରୀମତୀ ଯଶୋଦାଙ୍କ ନାମ ଉଲ୍ଲେଖ ଯୋଗ୍ୟ । ଏହିଠାରେ ଚଣ୍ଡିଦାସ ଓ ରାମି ଧୋବଣୀ—ଶୀର୍ଷକ ଏକ ନୃତ୍ୟାଭିନୟରେ ପଙ୍କଜ ଚୁକର ଭୂମିକାରେ ଅଭିନୟ କରି ଦର୍ଶକମାନଙ୍କୁ ବିଶେଷ ମୁଗ୍ଧ କରି ପାରିଥିଲେ ।

ଥିଏଟର ପାର୍ଟିରେ ତାଙ୍କର ମାସିକ ବେତନ ଥିଲା ୧୨ ଟଙ୍କା । ସେତିକରେ ସେ ବେଶ୍ ଚଳି ଯାଉଥିଲେ । କିନ୍ତୁ କିଛିଦିନ ପରେ ଏହି ଥିଏଟର ପାର୍ଟିଟି ଭାଙ୍ଗିଗଲା । ଫଳରେ ପଙ୍କଜ ଅଗତ୍ୟା ବାଧ୍ୟ ହୋଇ ପୁଣି ପୁରୀ ଫେରି ଆସିଲେ । ଏହା ପରେ ପୁରୀର ରାଧାଗୋବିନ୍ଦ ରାସ ଦଳରେ ସେ ଯୋଗ ଦେଲେ । ସେହି ଦଳରେ ରାଧା କୃଷ୍ଣ ଓ ରାମ ଭୂମିକାରେ ସେ ଏପରି ଅଭିନୟ ପ୍ରଦର୍ଶନ କଲେ, ଯାହା ଫଳରେ କ ଅନୁଷ୍ଠାନର ପ୍ରୋପ୍ରାଇଟର୍ ତାଙ୍କ ଉପରେ ବିଶେଷ ମୁଗ୍ଧ ହୋଇ ଦୀର୍ଘ ୫ ବର୍ଷ ପାଇଁ

ତାଙ୍କ ଅନୁଷ୍ଠାନରେ ରହି ଅଭିନୟ କରିବାକୁ ତାଙ୍କ ନାମରେ ଏକ ଜାଲ୍ ମୁଚ୍ଛଲିକା ଲେଖି ରଖିଥିଲେ । ତଥାପି ଏହାରେ କିଛି ଦିନପରେ ସେ ଏହି ଅନୁଷ୍ଠାନରୁ ସ୍ୱଇଚ୍ଛାରେ ବିଦାୟ ନେଇଥିଲେ ।

ଡ୍ରାମା ଓ ନୃତ୍ୟ ଗୀତ ତାଙ୍କ ଜୀବନର ସବୁ କିଛି । ଏହା ବ୍ୟତୀତ ଦୁନିଆଁରେ ତାଙ୍କୁ ଆଉ କିଛି ଭଲ ଲାଗେ ନାହିଁ ।

କିଛିଦିନ ପରେ ପ୍ରଖ୍ୟାତ ଅନ୍ନପୂର୍ଣ୍ଣା ଥିଏଟର 'ଏ' ଓ 'ବି' ଏହି ଦୁଇ ଦଳରେ ବିଭକ୍ତ ହେଲା, ପୁଣି ଏ ଗ୍ରୁପ୍‌ର ପରିଚାଳକଙ୍କଠାରୁ ଖବର ପାଇ ସେ କଟକ ଆସି 'ବି' ଗ୍ରୁପର ସ୍ୱତ୍ୱାଧିକାରୀ ଲିଙ୍ଗରାଜ ନନ୍ଦଙ୍କୁ ଭେଟି ନିଜ କଳା ପ୍ରତିଭାର ପରିଚୟ ଦେଲେ । ସୁଖର କଥା ସେଠାରେ ଶ୍ରୀ କାର୍ତ୍ତିକ ଘୋଷ ତାଙ୍କର ଅଭିନୟ କଳାରେ ମୁଗ୍ଧ ହୋଇ ଯିବାରୁ ତାଙ୍କୁ ନିଯୁକ୍ତି ମିଳିଲା । ଖାଇ, ପିଇ ମାସିକ ବେତନ ହେଲା ତାଙ୍କର ଆଠ ଟଙ୍କା । ପ୍ରାୟ ପୁରୀ ଓ କଟକର ଅଭିନେତା ଅଭିନେତ୍ରୀମାନଙ୍କୁ ନେଇ 'ବି'ଗ୍ରୁପ୍ଟି ଗଢି ଉଠିଲା । ସେଥିରେ ପଙ୍କଜ ଏକାଧାରରେ ଜଣେ କୁଶଳୀ ଅଭିନେତା ଓ ନୃତ୍ୟ ନିର୍ଦ୍ଦେଶକ ଭାବେ ସୁପରିଚିତ ହୋଇ ପାରିଲେ । ପ୍ରଥମ ନୃତ୍ୟ-ନାଟିକା ଭସ୍ମାସୁରରେ ପଙ୍କଜ ହେଲେ ପ୍ରଥମ ନୃତ୍ୟ ନିର୍ଦ୍ଦେଶକ ।

ନୃତ୍ୟନାଟିକାଟି ବେଶ୍ ଉପଭୋଗ୍ୟ ହେଲା । ଏଥିରେ ପଙ୍କଜ ନିଜେ ଭସ୍ମାସୁର ଭୂମିକାରେ ଅଭିନୟ ପ୍ରଦର୍ଶନ କରିଥିଲେ ଏବଂ ଶ୍ରୀ କେଳୁଚରଣ ମହାପାତ୍ର ଶିବ ଭୂମିକାରେ ଓ ତାଙ୍କର ସହଧର୍ମିଣୀ ଶ୍ରୀମତୀ ଲକ୍ଷ୍ମୀ ପ୍ରିୟା ମୋହିନୀ ଭୂମିକାରେ ନୃତ୍ୟାଭିନୟ କରୁଥିଲେ । ଏହି ସମୟକୁ ପଙ୍କଜଙ୍କ ବୟସ ୨୦ ବର୍ଷ ହୋଇଥିଲା ।

୧୯୦୪ ମସିହାରେ ସେ ଅନ୍ନପୂର୍ଣ୍ଣା 'ବି' ଗ୍ରୁପ୍‌ରେ ଯୋଗଦାନ କରିଥିଲେ ଏବଂ ୧୯୪୯ ମସିହା ଅକ୍ଟୋବର ୨ ତାରିଖରେ ସେହି ଅନୁଷ୍ଠାନରୁ ବିଦାୟ ଗ୍ରହଣ କରିଥିଲେ ।

ଅନ୍ନପୂର୍ଣ୍ଣା 'ବି' ଗ୍ରୁପ୍‌ରେ ଥିଲାବେଳେ ଶ୍ରୀମତୀ ସରୋଜିନୀ ନାୟକଙ୍କ ସହିତ ତାଙ୍କର ବିବାହ ହୋଇଥିଲା । ଦାମୋଦର ନାୟକଙ୍କର ମଧ୍ୟମା କନ୍ୟା ସରୋଜିନୀ । ତାଙ୍କୁ ହରପ୍ରିୟା ଦେବଦାସୀ ପାଳିତା କନ୍ୟାରୂପେ ଗ୍ରହଣକରି ପଙ୍କଜଙ୍କୁ ବିବାହ ଦେଇଥିଲେ । ଏହି ବୈବାହିକ ଜୀବନରେ ସେ ବହୁ ଅଭାବ ଅନଟନର ସମ୍ମୁଖୀନ ହେଲେ । କ୍ରମଶଃ ଏହି ଅଭାବ ଅସହ୍ୟ ହେବାରୁ ପଙ୍କଜ ଉକ୍ତ ଥିଏଟର ପାର୍ଟିରୁ ବିଦାୟ ନେବାକୁ ବାଧ

ହୋଇଥିଲେ । ଫଳରେ ବେକାର ହୋଇ କଣ୍ଟୁଚରଣ ଘରେ ବସିଗଲେ । ମହାରଗରୁ ଆସି କାନ୍ଥାରରେ ପଡ଼ିଲା ଭଳି ତାଙ୍କର ଅବସ୍ଥା ହେଲା । ଏତେ ଦୁଃଖରେ ମଧ୍ୟ ତାଙ୍କର ମନବଳ ଭାଙ୍ଗିପଡ଼ି ନ ଥିଲା । ବଞ୍ଚି ରହିବା ପାଇଁ ତ ସେ ସଂଗ୍ରାମକରି ଶିଖିଛନ୍ତି । ତେଣୁ ଦୁଃଖକୁ ସେ ସୁଖ ରୂପେ ଗ୍ରହଣକରି ନେଇଛନ୍ତି । ଜୀବନର ଚଲାପଥରେ ସେଥିପାଇଁ ସେ ଚିର ଉଦାସୀନ ।

କଣ୍ଟୁଚରଣ ଇମିତି ବେକାର ରହିବା ପରେ, ଜୀବନର ଗତିପଥ ତାଙ୍କର ଭିନ୍ନ ମୋଡ଼ ନେଲା । ସେ ଗ୍ଲଲେ ଗାଁ ଗହଳର ରଙ୍ଗମଞ୍ଚକୁ । ସେଠାରେ ସେ ଠିକାରେ ଆରମ୍ଭ କରିଦେଲେ ନୃତ୍ୟ ଗୀତର ଅଭିନୟ । ଜଣେ କୁଶଳୀ ଅଭିନେତା ରୂପେ ସେ ବେଶ୍ ଦୁଇପଇସା ଏହିପରି ରୋଜଗାର କଲେ ।

ନୃତ୍ୟଗୁରୁ ପଙ୍କଜ କହନ୍ତି—ସେଦିନର ସେହି ମାହାରୀ ନୃତ୍ୟ ଆଜିର ଓଡ଼ିଶୀ ନୃତ୍ୟ ଭାବେ ଆଦୃତ ତଥା ସର୍ବଜନ ପ୍ରଶଂସିତ । ଏକଦା ଅଶ୍ୱିନୀ କୁମାରଙ୍କର ଗୋଟିଏ ନାଟକରେ ମାହାରୀ ନୃତ୍ୟର ଢାଞ୍ଚାରେ ସେ ନୃତ୍ୟ ନିର୍ଦ୍ଦେଶନା ଦେଇଥିଲେ । ଏହି ନୃତ୍ୟଟିକୁ ତତ୍କାଳୀନ ଗଭର୍ଣ୍ଣର ଶ୍ରୀଯୁକ୍ତ ରାଜଗୋପାଳଚାରୀ ଦେଖି ବିଶେଷ ପ୍ରୀତ ହୋଇ ନୃତ୍ୟ ଗୁରୁ ପଙ୍କଜଙ୍କୁ ଏକ ଉପହାର ପ୍ରଦାନ କରିଥିଲେ ।

ଏହି ମାହାରୀ ନୃତ୍ୟ ଭାରତର ବଡ଼ଲାଟ ମାନ୍ୟବର ରାଜଗୋପାଳ-ଚାରୀଙ୍କ ନିକଟରେ ପୁନଶ୍ଚ ପରିବେଷଣ କରିବାର ସୁଯୋଗ ମିଳିଥିଲା କଟକ ବାରବାଟୀ ଷ୍ଟାଡ଼ିୟମରେ । ସେଦିନର ସାଂସ୍କୃତିକ କାର୍ଯ୍ୟକ୍ରମରେ ନୃତ୍ୟ ଗୀତର ଅଭିନୟ ପ୍ରଦର୍ଶିତ ହୋଇ ଥିଲା ଅନ୍ନପୂର୍ଣ୍ଣା 'ବି' ଗ୍ରୁପ୍‌ର ଶିଳ୍ପୀମାନଙ୍କ ଦ୍ୱାରା । ସେଠାରେ ସେହି ଏକ ମୁକ୍ତ ରଙ୍ଗମଞ୍ଚରେ ଶ୍ରୀମତୀ ଲକ୍ଷ୍ମୀପ୍ରିୟା ମାହାରୀ ନୃତ୍ୟ ପରିବେଷଣକରି ମାନ୍ୟବର ବଡ଼ଲାଟଙ୍କୁ ମୁଗ୍ଧକରି ପାରିଥିଲେ ।

୧୯୫୦ ମସିହାର କଥା, 'ଗୁଣ ଥିଲେ ଗୁଣିଆ' ମାଟିରେ ଭଗବାନ ସାହୁ ଅତି ଆନନ୍ଦରେ ଆସି ପଙ୍କଜଙ୍କୁ ଧରି ନେଇଥିଲେ ନରେନ୍ଦ୍ରପୁର କଳାକେନ୍ଦ୍ରକୁ । ପଙ୍କଜ ବିନା ଆପତ୍ତିରେ ସେଠାରେ ଯାଇ ଶାସ୍ତ୍ରୀୟ ପଦ୍ଧତିର ଅନୁଷ୍ଠାନର ଶିକ୍ଷାର୍ଥୀମାନଙ୍କୁ ନୃତ୍ୟ ଶିକ୍ଷା ଦେଲେ ।

ଟାଁ. ଗହଳର ପଡ଼ ପ୍ରଥା ଭଳି ନୃତ୍ୟ ନିର୍ଦ୍ଦେଶକ ଭଗବାନ ସାହୁ, ପଙ୍କଜଙ୍କୁ କଣ୍ଟି ଚୂଡ଼ା, ଗୁଣ୍ଡିଳ, ପଣପରିବା ଓ ନଡ଼ିଆ ଭେଟି ଦେଇ ଗାଁକୁ ବିଦା କରୁଥିଲେ । ପଙ୍କଜ ଖୁସିରେ ସେସବୁ ଧରି ଘରକୁ ଫେରନ୍ତି ଏବଂ ପୁଣି ଯେତେବେଳେ ସେମାନେ ଡାକନ୍ତି, ସେତେବେଳେ ସେ ନରେନ୍ଦ୍ରପୁର ଯାଇ ଅନୁଷ୍ଠାନର ଶିକ୍ଷାର୍ଥୀମାନଙ୍କୁ ନୃତ୍ୟ ଶିଖାଇ ଥାନ୍ତି ।

ଅନେକ ଦିନ ତଳର କଥା । କଟକର ଉଗରପଡ଼ା ଠାରେ ଭଞ୍ଜ ଜୟନ୍ତୀ ଉତ୍ସବରେ ଯୋଗଦେବା ପାଇଁ ନୃତ୍ୟଗୁରୁ ପଙ୍କଜଙ୍କୁ ନିମନ୍ତ୍ରଣ ମିଳିଲା । କଳିଙ୍ଗ ଭାରତୀର ପ୍ରାଣ ପ୍ରତିଷ୍ଠାତା ଶ୍ରୀ ବଳନ୍ଦଚରଣ ପଟ୍ଟନାୟକଙ୍କ ଠାରୁ ସେ ଏଥିପାଇଁ ଏକ ତାରବାର୍ତ୍ତା ମଧ୍ୟ ପାଇଲେ । ରାମାୟଣର ସୀତା-ଚୋରି ଠାରୁ ଆରମ୍ଭ କରି ରାବଣର ମୃତ୍ୟୁ ପର୍ଯ୍ୟନ୍ତ କଥାବସ୍ତୁକୁ ପଙ୍କଜ ପରିବେଷଣ କଲେ ନିଜର ନୃତ୍ୟନାଟିକାରେ । ଏଥିରେ ସେ ନିଜେ ଜଟାୟୁ, ତାଙ୍କର ଗୁରୁ କେଳୁଚରଣ ମହାପାତ୍ର ରାମ ଓ ଗୁରୁଣୀ ଲକ୍ଷ୍ମୀପ୍ରିୟା ସୀତା ଭୂମିକାରେ ନୃତ୍ୟାଭିନୟ ପ୍ରଦର୍ଶନ କରିଥିଲେ ଏବଂ ଏହି ଅଭିନୟରେ ଯେଉଁମାନେ କଣ୍ଠଦାନ କରିଥିଲେ ସେମାନେ ହେଲେ— ସିଂହାରୀ ଶ୍ୟାମସୁନ୍ଦର କର, ନିମାଇଁ ଚରଣ ହରିଚନ୍ଦନ, ଉପେନ୍ଦ୍ର ତ୍ରିପାଠୀ ଓ କିଶୋର କବି ଶ୍ୟାମସୁନ୍ଦର ।

ଏଥିରେ ପଙ୍କଜଙ୍କୁ ଭୂୟସୀ ପ୍ରଶଂସା ମିଳିଲା । ଏହା ଫଳରେ ସେ କଟକ ସହରରେ ବହୁ ସମ୍ଭ୍ରାନ୍ତ ବଂଶର ପୁଅଝିଅଙ୍କୁ ଦେବଦାସୀ ଢାଞ୍ଚାରେ ନୃତ୍ୟ ଶିକ୍ଷା ଦେଇ ନିଜର ଜୀବିକା ନିର୍ବାହ କରିବାକୁ ଲଗିଲେ । ବିଭିନ୍ନ ଅନୁଷ୍ଠାନ ତରଫରୁ ଆୟୋଜିତ ସାଂସ୍କୃତିକ କାର୍ଯ୍ୟକ୍ରମରେ ନୃତ୍ୟ ପରିବେଷଣ କରିବାକୁ ତାଙ୍କୁ ବର୍ଷର ଅଧିକାଂଶ ସମୟରେ ବହୁ ନିମନ୍ତ୍ରଣ ମିଳିଲା । ସେତେବେଳେ ସେ ମାତ୍ର ଗୋଟିଏ ପୁଅ ଓ ଗୋଟିଏ ଝିଅର ବାପ । ଏଇ ପିଲା ଦୁଇଟିଙ୍କୁ ଧରି ସସ୍ତ୍ରୀକ ସେ କଟକର ଶ୍ରୀରାମଚନ୍ଦ୍ର ଭବନ ନିକଟସ୍ଥ ଏକ ଭଡ଼ାଘରେ ବାସକଲେ ।

ତାଙ୍କ ସହଧର୍ମିଣୀ ଶ୍ରୀମତୀ ସରୋଜନୀ ଟାଉନ୍‌ହଲ ରୋଡ଼ରେ ଥିବା ଭିକାରୀ ପଟ୍ଟନାୟକଙ୍କ ଅଭଙ୍ଗା କଣ୍ଢେଇ କାରଖାନାରେ ଯୋଗ ଦେଇ-ଥିଲେ, ତାଲିମ ଗ୍ରହଣ କରିବା ପାଇଁ । ଏଣେ ସ୍ୱାମୀ ତାଙ୍କର କଟକରେ ଘରଘର ବୁଲି ନାଚ ଶିଖାଇ ବେଶ୍ ଦୁଇପଇସା ଅର୍ଜନ କରିବାକୁ

ଲାଗିଲେ । ଶେଷରେ ବ୍ରଜସୁନ୍ଦର ଦାସଙ୍କ ସ୍ଥାପିତ 'ସଙ୍ଗୀତ ସମାଜ' ଅନୁଷ୍ଠାନରେ ନୃତ୍ୟଗୁରୁ ଭାବେ ତାଙ୍କୁ ନଯୁକ୍ତି ମିଳିଲା । ଆଉ ତାଙ୍କର ବେତନ ହେଲା ମାସକୁ ୩୦ ଟଙ୍କା ।

ଘୂରି ଘୂରି ପାଖ ୪ ବର୍ଷ ଏହିପରି କଟିଗଲା । ଖୁବ୍ ଖ୍ୟାତି ଅର୍ଜନ ହେଲା । ପଇସା ମଧ୍ୟ ବେଶ୍ ମିଳିଲା । କଟକ ବାଙ୍କା ବଜାରସ୍ଥ ଜନତା ରଙ୍ଗମଞ୍ଚରେ ସେ ରାତିରେ ଯାଇ ଅଭିନୟ କରନ୍ତି । ତାଙ୍କର ହାସ୍ୟରସାତ୍ମକ ଅଭିନୟ ଯେଉଁମାନେ ଦେଖିଛନ୍ତି, ସେମାନଙ୍କ ନିକଟରେ ଏହି ନୃତ୍ୟଗୁରୁ ଆଜୀବନ ସ୍ମରଣୀୟ ହୋଇ ରହିଥିବେ । ନୃତ୍ୟ ଶିକ୍ଷାରୁ କିଛି ପଇସା ସଞ୍ଚୟ କରି ସେସମୟରେ ସେ ନିଜ ପାଇଁ ଇଙ୍ଗ୍ଲିସ୍ ରାଲେ ସାଇକେଲ ଟିଏ କିଣି ସହର ତମାମ ବୁଲି ନୃତ୍ୟ ଶିକ୍ଷା ଦେବାର ପଥକୁ ଅଧିକ ସହଜ ଓ ସୁଗମ କରିପାରି ଥିଲେ ।

## ଚଳଚ୍ଚିତ୍ର ଜଗତରେ ନୃତ୍ୟଗୁରୁ :

୧୯୫୦ରୁ ୧୯୫୨ ମସିହା ମଧ୍ୟରେ କଟକ ରୂପଶ୍ରୀ ଥିଏଟର୍‌ରେ ହାସ୍ୟରସାତ୍ମକ ଅଭିନେତା ଥାଇ, ରୂପଶ୍ରୀରଞ୍ଜି ଚଳଚ୍ଚିତ୍ର ଅନୁଷ୍ଠାନର ଶ୍ରୀଜଗନ୍ନାଥ ଚଳଚ୍ଚିତ୍ରରେ ଦେବଦାସୀ ନୃତ୍ୟ ନିର୍ଦ୍ଦେଶକ ଥିଲେ ପଙ୍କଜ । ତତ୍କାଳୀନ ପୁରୀର କଲେକ୍ଟର ଶ୍ରୀଯୁକ୍ତ ପି. କେ. ଦାସଙ୍କ ଜ୍ୟେଷ୍ଠକନ୍ୟା କୁମାରୀ ରେଜା ଏହି ଦେବଦାସୀ ନୃତ୍ୟରେ ଅଂଶଗ୍ରହଣ କରି ପ୍ରଶଂସନୀୟା ହୋଇ ପାରିଥିଲେ । ୧୯୫୪ ମସିହା ମଧ୍ୟରେ ଓଡ଼ିଶୀ ନୃତ୍ୟ ଗୀତର ଯେଉଁ ପ୍ରତିଯୋଗିତା କଟକର ବିଭିନ୍ନ ଅନୁଷ୍ଠାନ ଆନୁକୂଲ୍ୟରେ ଅନୁଷ୍ଠିତ ହୋଇଥିଲା । ସେହିସବୁ ପ୍ରତିଯୋଗିତାରେ ଗୁରୁ ପଙ୍କଜଙ୍କର ଛାତ୍ରଛାତ୍ରୀ-ମାନେ ବିଶେଷ କୃତିତ୍ୱ ଅର୍ଜନ କରିପାରି ଥିଲେ ।

ଏହି ସମୟରେ ପୁରୀରେ ତାଙ୍କ ପାଳିତା ମାତା ଅନ୍ନପୂର୍ଣ୍ଣାଙ୍କର ଦେହାନ୍ତ ହେଲା । ତାଙ୍କର ଶୁଦ୍ଧିକ୍ରିୟା କରିବା ପାଇଁ ସେ ସପରିବାର କଟକରୁ ପୁରୀ ଚାଲିଆସିଲେ, ପୁରୀରେ ଥିବା ତାଙ୍କର ସେହି ଭଙ୍ଗା କୁଡ଼ିଆକୁ ମରାମତି କରି ପିଲାଛୁଆଙ୍କୁ ଧରି ଆନନ୍ଦରେ କାଳାତିପାତ କରିବାକୁ ଲାଗିଲେ ।

## କୀର୍ତ୍ତି ଓ କୃତି :

୧—ଠିକ୍ ଏତିକବେଳେ ୩ଟି ସଙ୍ଗୀତ ଶିକ୍ଷା ଅନୁଷ୍ଠାନରେ ତାଙ୍କୁ ନିଯୁକ୍ତ ମିଳିଥିଲା । ସାମପ୍ରିକ ନୃତ୍ୟ ଶିକ୍ଷକ ଭାବେ, ଓଡ଼ିଶା ସଙ୍ଗୀତ ପରିଷଦ ପୁରୀ । ଯାହାର କି ପ୍ରତିଷ୍ଠାତା ଥିଲେ ପୁରୀର ଆଡ଼ଭୋକେଟ୍ ୬ ଶ୍ରୀ ଲୋକନାଥ ପଟ୍ଟନାୟକ ।

୨—ଭୁବନେଶ୍ୱରରେ ପ୍ରତିଷ୍ଠିତ 'ଲଳିତ କଳାପିଠ' ଅନୁଷ୍ଠାନରେ ଶ୍ରୀଯୁକ୍ତ ଗୋପାଳ ମିଶ୍ରଙ୍କ ତତ୍ତ୍ୱାବଧାନରେ ନୃତ୍ୟ ଶିକ୍ଷକ ରୂପେ ନିଯୁକ୍ତି ।

୩—ଉତ୍କଳ ସଂଗୀତ ସମାଜରେ ନିଯୁକ୍ତ ପାଇ କାର୍ଯ୍ୟ କରିବା ।

## ନୃତ୍ୟଗୁରୁ ଏବଂ ତାଙ୍କର ପରିବାର :

୨ ପୁଅ ଓ ୪ ଝିଅଙ୍କୁ ନେଇକରି ପଙ୍କଜ ଓ ଯଶୋଦାଙ୍କ ସୁନ୍ଦର ସଂସାର ଗଢ଼ି ଉଠିଛି । ସେମାନଙ୍କ ମଧ୍ୟରୁ ଜ୍ୟେଷ୍ଠା କନ୍ୟା ବିଜୟଲକ୍ଷ୍ମୀ ନୃତ୍ୟକଳାରେ ନୃତ୍ୟାଚାର୍ଯ୍ୟ ଉପାଧି ଲାଭ କରିଛନ୍ତି । କାଶିର 'ବସନ୍ତ କଲେଜ' ଏବଂ ବାରଣସୀର 'କୃଷ୍ଣମୂର୍ତ୍ତି ଫାଉଣ୍ଡେସନ୍ ଅଫ୍ ଇଣ୍ଡିଆ' ଏହି ଉଭୟ ଅନୁଷ୍ଠାନରେ ନୃତ୍ୟ ଅଧ୍ୟାପିକା ରୂପେ କାର୍ଯ୍ୟକରି ସଂପ୍ରତି ସେ ଭୁବନେଶ୍ୱରରେ ସାଂସାରିକ ଜୀବନଯାପନ କରୁଛନ୍ତି । କନିଷ୍ଠ ପୁଅ ଶ୍ରୀମାନ୍ ଶରତ ଦାସ, ଆଡ଼ଭୋକେଟ୍ ଭାବେ ଭୁବନେଶ୍ୱରରେ ଅବସ୍ଥାପିତ । ଏହି ପିଲାମାନଙ୍କ ମଧ୍ୟରୁ ବର୍ତ୍ତମାନ ସୁଦ୍ଧା ସେ ୩ ପୁଅ ଓ ୩ ଝିଅଙ୍କୁ ବିବାହ ଦେଇ ସାରିଛନ୍ତି ।

ବର୍ତ୍ତମାନ ସେ ପୁରୀ କଂସେଇବେଣ୍ଟ ସାହିରେ ଏକ ନୂତନ ପକ୍କା ଗୃହ ନିର୍ମାଣ କରି ଜୀବନର ୪ର୍ଥ ଅବସ୍ଥାକୁ ମଧ୍ୟ ସେହି ନୃତ୍ୟକଳାରେ ଭୁଲାଇ ରଖିଛନ୍ତି । କୁଂସେଇବେଣ୍ଟ ସାହିର ନୂଆଗଡ଼ ବସ୍ତି । ସେହିଠାରେ ଅମୃତମଣି ଜାଗାରୁ ତାଙ୍କୁ ତିନିଗୁଣ୍ଠ ଜମି ମିଳିଛି । ଲୋଅର୍ ଇନ୍‌କମ୍ ଗ୍ରୁପ୍ ହାଉସିଙ୍ଗ୍ ସ୍କିମ୍‌ରେ ତାଙ୍କୁ ଘର କରିବା ପାଇଁ ସରକାରୀ ଋଣ ମଧ୍ୟ ମିଳିଛି । ଘର ତିଆରି ସରିଛି କିନ୍ତୁ କାମ ସରିନି । ପୁରୀ ଶ୍ରୀକ୍ଷେତ୍ରରେ ଘରଟିର ନାମ ଦିଆଯାଇଛି—"ପଙ୍କଜପୁରୀ" । ଶୁଣିଲି ଘର ଛାତରୁ ବର୍ଷାଦିନେ ସ୍ଥାନେ ସ୍ଥାନେ ପାଣି ଗଳୁଛି । ଗୋଡ଼, ବାଲି ଗଦା ହୋଇଛି ।

କାମ ଶେଷ ହୋଇ ପାରୁନ । ଉଦାସୀ କଳାପ୍ରିୟ ପାଗଳ ଜୀବନ କ'ଣ ଏସବୁ କଥାର ଗୁରୁତ୍ୱ ବୁଝିଛି ନା ବୁଝିବ ! ତେଣୁ ସେ ଏଥିପାଇଁ ବ୍ୟସ୍ତ ବା ଚିନ୍ତିତ ନୁହଁନ୍ତି ।

* 'ପ୍ରୟାଗ ସଙ୍ଗୀତ ସମିତି' ଏଲାହାବାଦରୁ ଶାସ୍ତ୍ରୀୟ ନୃତ୍ୟରେ ସେ 'ସଙ୍ଗୀତ ପ୍ରଭାକର' ଉପାଧି ଲାଭକରିଥିଲେ ୧୯୬୨ ମସିହାରେ ।
* କେନ୍ଦ୍ରୀୟ ସଙ୍ଗୀତ ନାଟକ ଏକାଡେମୀ ଦ୍ୱାରା ପୁରସ୍କୃତ ଓ 'ଓଡ଼ିଶୀ ନୃତ୍ୟ ଗୁରୁ' ଉପାଧିଲାଭ ୧୯୬୧ ମସିହାରେ ।
* ସାରଙ୍ଗ ଦେବ ବୃତ୍ତି ଓ ବମ୍ବେର ସୁରସିଂହାର ସଂସଦ ଦ୍ୱାରା 'ଓଡ଼ିଶୀ ନୃତ୍ୟ ସାଧକ' ଉପାଧିଲାଭ ।
* ଓଡ଼ିଶାର ଜୟଦେବ ସଙ୍ଗୀତ ପରିଷଦ, ପଦ୍ମମଣି ସାହିତ୍ୟ ସଂସଦ, ଓଡ଼ିଶା ସାହିତ୍ୟ ଏକାଡେମୀ ଏବଂ ସଙ୍ଗୀତ ନାଟକ ଏକାଡେମୀ ତରଫରୁ ସେ ସମ୍ମାନିତ ତଥା ପୁରସ୍କୃତ ।
* ବିହାରର 'ଭାରତୀୟ ନୃତ୍ୟକଳା ମନ୍ଦିର'ରେ ଓଡ଼ିଶୀ ନୃତ୍ୟକଳାର ପ୍ରଚାରକ ।
* 'ତନୟା' ସାଂସ୍କୃତିକ ଅନୁଷ୍ଠାନ ତରଫରୁ ସେ ପୁରସ୍କୃତ ତଥା ସମ୍ମାନିତ ଏବଂ ରାଉରକେଲାରୁ 'ଭଞ୍ଜକଳାକେନ୍ଦ୍ର' ତରଫରୁ ସମ୍ମାନିତ ଓ ଫଳକ ପ୍ରାପ୍ତ ।

ଏହିପରି କେତେ ଉପଢୌକନ, କେତେ ଉପାୟନ, କେତେ ପୁରସ୍କାର ଆଜି ମାନପତ୍ର । ଏସବୁକୁ ଜାଣିଲା ମାତ୍ରେ, ଦେଖିଲା ମାତ୍ରେ ମୁଣ୍ଡ ମୋର ତାଙ୍କ ପାଦତଳେ ସ୍ୱତଃ ନଇଁ ଯାଇଥିଲା । ଅତଏବ ଭାବ ପ୍ରବଣ ହୋଇ ମୁହଁରୁ ମୋର ବାହାରି ପଡ଼ିଥିଲା—ଯଥାର୍ଥରେ ଆପଣ ଉତ୍କଳ ଜନନୀଙ୍କର ବରପୁତ୍ର । ଏ ଦେଶ, ଏ ଜାତିର ଆପଣ ଗର୍ବ ଓ ଗୌରବ । ଏତିକ ଶୁଣିସାରି ସେ ହସି ହସି ଖୁବ୍ ଶାନ୍ତ ଓ ଗମ୍ଭୀର କଣ୍ଠରେ ଶୁଣାଇଥିଲେ—ଆଜ୍ଞା ଆମେତ ଶୂନ୍ୟ ହସ୍ତରେ ଆସିଛେ, ପୁଣି ସେହି ଶୂନ୍ୟ ହସ୍ତରେ ଫେରିଯିବା । ସଂସାର ରଂଗମଞ୍ଚରେ ଆମେ ପ୍ରତ୍ୟେକ ଜଣେ ଜଣେ ଅଭିନେତା ଆଉ ଅଭିନେତ୍ରୀ । ହସି ହସାଇବା, ଭୁଲି ଭୁଲାଇବା ଆମର ଧର୍ମ । ଏଠି ଲାଭ କ୍ଷତି, ସୁଖ ଦୁଃଖ, ଭଲ ମନ୍ଦ ଏବଂ ନିନ୍ଦା ପ୍ରଶଂସାର ସ୍ଥାନ କାହିଁ ? ଏସବୁକୁ ଆଖି ଆଗରେ ରଖି କଳାକାର କଣ କେବେ ସୁଖ ଶାନ୍ତି ପାଇବ ନା ଆଗେଇ ପାରିବ ।

ବର୍ତ୍ତମାନ ସେ ୭୨ବର୍ଷ ବୟସରେ ପଦାର୍ପଣ କଲେଣି । ସୁଖରେ କି ଦୁଃଖରେ କଟିବ୍ ହେବନି । ତଥାପି · ତାଙ୍କ ଡଙ୍ଗା ଚାଲିଛି । ପରିବାର ବଞ୍ଚିରହିଛି ଆଉ ତା ସାଥିରେ ବଞ୍ଚି ରହିଛି ତାଙ୍କର କଳା । ଓଡ଼ିଶା ସରକାରଙ୍କଠାରୁ ଏହି ୪ଥ ଅବସ୍ଥାରେ ମଧ୍ୟ ତାଙ୍କୁ କୌଣସି ଆର୍ଥିକ ସାହାଯ୍ୟ ମିଳିପାରିନି । କିନ୍ତୁ ବଡ଼ ଭାଗ୍ୟର କଥା କେବଳ ଭାରତ ସରକାରଙ୍କ ଠାରୁ ସେ କଳାକାର ହିସାବରେ ମାସିକ ୩୭୫ଟଙ୍କା ସାହାଯ୍ୟ ପାଉଛନ୍ତି ।

ସେ ଭୁବନେଶ୍ୱରସ୍ଥ ଉତ୍କଳ ସଙ୍ଗୀତ ମହାବିଦ୍ୟାଳୟରୁ ଅଧ୍ୟକ୍ଷ ଭାବେ ଅବସର ଗ୍ରହଣ କରି ବର୍ତ୍ତମାନ ପୁରୀରେ କାଳାତିପାତ କରୁଛନ୍ତି । ଆଉ ତାଙ୍କ କଳାପ୍ରିୟ ଜୀବନକୁ ଓ ନୃତ୍ୟକଳାକୁ ବଞ୍ଚାଇ ରଖିବା ପାଇଁ ସେ ପୁରୀ ଝାଉଜନରେ 'ଉଡ୍ର ନୃତ୍ୟ ପଙ୍କଜ' ନାମରେ ଏକ ନୃତ୍ୟ ଶିକ୍ଷା କେନ୍ଦ୍ର ନିଜର ବ୍ୟକ୍ତିଗତ ଉଦ୍ୟମରେ ପ୍ରତିଷ୍ଠା କରିଛନ୍ତି ।

ଓଡ଼ିଶୀ ନୃତ୍ୟ ପଲ୍ଲବକୁ ଧରି ଆଜି ସେ ଆମର ଅତୀତ ଗୌରବର ସ୍ମୃତି ସ୍ମରଣ କରୁଛନ୍ତି । ସେ ଖୋଜି ବୁଲୁଛନ୍ତି ଏ ଜାତିର କଳା ଜଗତରେ ଜହ୍ଲରି ଗ୍ରାହକମାନଙ୍କୁ । ଏଦେଶରେ ପଙ୍କଜଙ୍କ ପରି କେତେକ ନୃତ୍ୟ ଗୁରୁ ଅଛନ୍ତି, ପୁଣି ଆସିବେ । କିନ୍ତୁ ତାଙ୍କ ପରେ ତାଙ୍କ ଶୂନ୍ୟସ୍ଥାନ ପୂରଣ ହେବ ତ ? ଏହି ପ୍ରଶ୍ନର ଉତ୍ତର ଦେବାକୁ ଯାଇ ସେଦିନ ତାଙ୍କ ମୁହଁରୁ ବାହାରି ପଡ଼ିଥିଲା—ଗୁରୁ ମିଲେଙ୍ଗେ ଲାଖ, ମଗର ସାଗିରଦ୍ ନ ମିଲେ ଏକ ।



# ଅନନ୍ତ : ଆକାଶର ବ୍ୟାପ୍ତି

ବସନ୍ତ ମହାନ୍ତି

୧୯୧୪ ମସିହା, ଜୁନ୍ ମାସର କେଉଁଏକ ଅମୃତଲଗ୍ନ । ପୁରୀ ଜିଲ୍ଲା ଅନ୍ତର୍ଗତ ଚଣ୍ଡାହୁଣ୍ଡା ଗ୍ରାମର ଏକ ମଧ୍ୟବିତ୍ତ ଉଦାରପନ୍ଥୀ ଜମିଦାର ପରି-ବାରରେ ଆନନ୍ଦର ମହୋତ୍ସବ । ପୃଥିବୀର ପ୍ରଥମ ସ୍ପର୍ଶରେ କୁଆଁ କୁଆଁ କାନ୍ଦର ଅପୂର୍ବ ସ୍ୱରଲହରୀରେ ଚମତ୍କୃତ କରିଥିବା ସେହି ନୂତନ ଅତିଥିଙ୍କର ଆଗମନୀ ସଙ୍ଗୀତରେ ଚଣ୍ଡୀହୁଣ୍ଡା ଗ୍ରାମର ପରିବେଶ କ୍ରମଶଃ ମୁଖରିତ ହୋଇ ଉଠୁଛି । ପୂର୍ବ ଆକାଶ, ସୂର୍ଯ୍ୟଙ୍କର ଉଦୟକାଳୀନ ପୂର୍ବରାଗରେ ସିନ୍ଦୂରିତ । ଗ୍ରାମଦେବୀ ସଙ୍କଟ-ତାରିଣୀଙ୍କ ମନ୍ଦିର ଏବଂ ଗ୍ରାମ ଦେବତା ନୀଳକଣ୍ଠଙ୍କ ମନ୍ଦିର ଆଡ଼ୁ ଉଦାତ୍ତ କଣ୍ଠରେ ଭକ୍ତର ସ୍ତୋତ୍ର ପାଠରେ ଗ୍ରାମୀଣ ପରିବେଶ ଅଧିକ ଶାନ୍ତ ଏବଂ ପବିତ୍ର । କୁଳ-ଦେବତା ରାଧାଗୋବିନ୍ଦଙ୍କ ଉଦ୍ଦେଶ୍ୟରେ ପ୍ରଣତି ଜଣାଇଲେ ଜୟକୃଷ୍ଣ ପଟ୍ଟନାୟକ । ଆଃ···କି ଆନନ୍ଦ ।

ତରବର ହୋଇ ଏନ୍ତୁଡ଼ିଶାଳରୁ ପଦାକୁ ବାହାରି ଆସିଲେ ଜୟକୃଷ୍ଣଙ୍କ ମା' ସୁଲୋଚନା ଦେବୀ । ଝାପ୍‌ସା ଅନ୍ଧାରରେ ଦେଖି ପାରିଲେ କିଏ ଜଣେ ବାହାରେ ଛିଡ଼ା ହୋଇଛି । ପାନପିକ ପକାଇସାରି ପାଖକୁ ଆସିଲେ ସୁଲୋଚନା "···କିଏ ! ଜୟ! କରେ ?···ପୁଅଟିଏ ହୋଇଚି...।"

ଗମ୍ଭୀର ଆତ୍ମତୃପ୍ତି ଏବଂ ପ୍ରଶାନ୍ତିରେ ଜୟକୃଷ୍ଣ ପାଲଟି ଗଲେ ଅଲଗା ଜଣେ ମଣିଷ । ଆବେଗର ଆତିଶଯ୍ୟରେ ସେ କୁଳଦେବତା ରାଧାଗୋବିନ୍ଦଙ୍କ ମନ୍ଦିର ଆଡ଼କୁ ଆଗେଇ ଚାଲିଲେ । କେତେକଣ ଭାବି ଯାଉଥାନ୍ତି ସେ । ତାଙ୍କର ସ୍ୱପ୍ନ ଆଜି ସାର୍ଥକ ହୋଇଛି । ଆଃ ! ଦରୋଟି କଣ୍ଠରେ ବାପା ଡାକ କେତେ ସୁନ୍ଦର ଶୁଭିବ । ଭବିଷ୍ୟତ ମଧୁର ସ୍ୱପ୍ନର ସମ୍ମୋହନ ମନ୍ତ୍ରରେ ଜୟକୃଷ୍ଣ ସମ୍ପୂର୍ଣ୍ଣ ସମ୍ମୋହିତ ! ରାଧାଗୋବିନ୍ଦଙ୍କ ମନ୍ଦିର ଭିତରୁ ପୂଜକର, ଅନୁନାସିକ ସ୍ୱରରେ ମାଙ୍ଗଳିକ ମନ୍ତ୍ର ପାଠ କ୍ରମଶଃ ସ୍ପଷ୍ଟରୁ ସ୍ପଷ୍ଟତର ହେଉଥିଲା ।

ଜୟକୃଷ୍ଣ ପଟ୍ଟନାୟକଙ୍କ ପରିବାରରେ ନୂତନ ଅତିଥି । ନାମକରଣ ଦିଆହେଲା ବେଳକୁ ସୁଲୋଚନା (ଜୟକୃଷ୍ଣଙ୍କ ମା') କହିଲେ ମୁଁ ତା' ନାଁ ଦେବି ଜୟକୃଷ୍ଣ ! ମା'ଙ୍କ କଥାକୁ ବାଧ୍ୟ ଶିଶୁଟି ପରି ମାନିନେଲେ । ନାମ ରହିଲା—ଅନନ୍ତ । ସମସ୍ତଙ୍କ ପ୍ରିୟ, ଆଦରର ନୟନ ପିତୁଳା ହେଲେ ଅନନ୍ତ ।

ମହାଦେଈଙ୍କର ବାର ଓଷା, ତେର ବ୍ରତର ଫଳ ଏଇ ଅନନ୍ତ ।

ସମସ୍ତଙ୍କ ଆଦର ଯତ୍ନ ପାଇ ଅନନ୍ତ କ୍ରମେ କଥା କହି ଶିଖିଲେ । ଆଣ୍ଠେଇ ଆଣ୍ଠେଇ ଜେଜେମାଙ୍କ ପାଖକୁ ଗୁଲିଯାଆନ୍ତି । ଜେଜେମା କୋଳେଇ ନେଇ କହନ୍ତି କେତେ ଅପାଶୋରା କଥା । "ଧନ ମୋ'ର ବଡ଼ ମଣିଷ ହେବ, ପାଠ-ପଢ଼ିବ, କେତେ ଲୋକଙ୍କ ସାଙ୍ଗରେ ମିଶିବ । ଡ଼ିପୋଟି ହେବ···" ଏମିତି କେତେ କଥା । ମହାଦେଈ ସବୁ ଶୁଣି ଟିକେ ହସି ଦଅନ୍ତି । ଜନ୍ମଦାତ୍ରୀ ସେ । ସର୍ବାନ୍ତଃକରଣରେ ପୁଅର ମଙ୍ଗଳ ହିଁ ତାଙ୍କର କାମ୍ୟ ।

ଅନନ୍ତ ଗାଁ ସ୍କୁଲରେ ନାମ ଲେଖାଇଲେ । ଖୁବ୍ କମ୍ କଥା କହନ୍ତି । ଅପେକ୍ଷାକୃତ ଗମ୍ଭିର ପ୍ରକୃତିର ଅନନ୍ତଙ୍କ ସାଥି ଗୁଟମାନେ ଠିକ୍ ଭାବରେ ଗ୍ରହଣ କରିପାରୁ ନଥାନ୍ତି । ହେଲେ ଭରସି କରି କିଛି କହି ପାରନ୍ତି ନାହିଁ । ସବୁବେଳେ କେମିତି ଅନ୍ୟମନସ୍କ ରହୁଥିବା ଏହି ବାଳକର ସାଙ୍ଗ ହେବା କଥା କେହି ଚିନ୍ତା ବି କରୁନଥାନ୍ତି । ହେଲେ ମନ ହେଲେ ଅନନ୍ତ ହସି ହସି ଅନ୍ୟମାନଙ୍କ ସହ ମିଶିଯାଆନ୍ତି । ସ୍କୁଲ ପରେ ସେ ମାତି ଯାନ୍ତି ଖେଳରେ । ଖେଳୁ ଖେଳୁ ଭୋକ ଶୋଷ ଭୁଲି ଯାଆନ୍ତି । ଧୂଳି ଧୂସରିତ ହୋଇ ଘରକୁ ଫେରିଲାପରେ କୃତ୍ରିମ ବିରକ୍ତି ପ୍ରକାଶ କରନ୍ତି ମହାଦେଈ । ଗୋଡ଼ ହାତ ଧୂଆଇ ଦେଇ ହାତରେ ଜଳଖିଆ ଖୋଇ ଦଅନ୍ତି । ଜୟକୃଷ୍ଣ ତାଗିଦ୍ କରି ଦେଉଥାନ୍ତି—ଅନନ୍ତର ଯେମିତି କୌଣସି ଅସୁବିଧା ନହୁଏ । ସମସ୍ତଙ୍କର ନଜର ଅନନ୍ତଙ୍କ ଉପରେ । ସମସ୍ତଙ୍କ ସ୍ନେହ ଆଦର ପାଇ ଅନନ୍ତ ହେଲେ ୫ ବର୍ଷର ବାଳକ ।

ସେଦିନର ତିଥି, ବାର, ନକ୍ଷତ୍ର ଏବେ ବିସ୍ମୃତି ଗର୍ଭରେ ବିଲୀନ । ଜୟକୃଷ୍ଣ ହଠାତ୍ ଅସୁସ୍ଥ ହୋଇ ପଡ଼ିଲେ । ପରିବାରରେ ଗହଳ ଚହଳ ପଡ଼ିଗଲା । ମହାଦେଈ ନିଜକୁ ସମ୍ଭାଳି ପାରିଲେ ନାହିଁ । ସୁଲୋଚନା ଦେବୀ ସବୁବେଳେ ପୁଅ ପାଖରେ । ଖାଇବା ପିଇବା ବନ୍ଦ । ଅନନ୍ତ କିଛି ବୁଝିପାରୁ ନଥାନ୍ତି । ବଲ୍‌ବଲ କରି ବାପାଙ୍କ ମୁହଁକୁ ଗୁହିଁଥାନ୍ତି । କୁଳଦେବତା ରାଧାଗୋବିନ୍ଦଙ୍କ ପାଖରେ ମହାଦେଈ ଅଧିଆ ପଡ଼ିଲେ । "ହେ ରାଧାଗୋବିନ୍ଦ ତାଙ୍କୁ ଭଲ କରିଦିଅ ଦେବତା । ମୁଁ ତମ ପାଖରେ ଧନ ଜନ, ଗୋପ, ଲକ୍ଷ୍ମୀ କିଛି ଅଳି କରୁନି । ମୋ ଘରର ସୁଖ ଫେରେଇ ଆଣ ରାଧାଗୋବିନ୍ଦ । ମୋ ଇହକାଳ, ପରକାଳକୁ ନଷ୍ଟ କରି ଦଅନି ।" ପଥର ଦେବତା ପଥର ପାଲଟି ଗଲେ । ବଇଦ, ଓଷଦ କିଛି କାମ କଲାନି । "ମୋ···ପୁ···ଅ ··ତମକୁ ଲାଗିଲା ..'' ଏତିକ କହି ଜୟକୃଷ୍ଣ ଚିରଦିନ ପାଇଁ ଆଖି ବୁଜିଲେ । ପଟ୍ଟନାୟକ ପରିବାରର ସମସ୍ତେ କାନ୍ଦି ଉଠିଲେ । ଚଣାହଟା ଗାଁରେ ଚହଳ ପଡ଼ିଗଲା । ସମସ୍ତଙ୍କ କାନ୍ଦ ଦେଖି ଅନନ୍ତ କିଛି ବୁଝିଲା ପରି ଜେଜେମାଙ୍କୁ ପଗ୍ରୁରୁଥାନ୍ତି···"ଜେଜେମା କ'ଣ ହେଲା ? ବୁ କାନ୍ଦୁଛୁ କାହିଁକି ? ବାପା କାହିଁକି କିଛି କହୁ ନାହାନ୍ତି ? ମା'ର କ'ଣ ହେଲା ?

ସେ ଏମିତ ଚୁପ୍ ହୋଇ ଛିଡ଼ା ହୋଇଛନ୍ତି କାହିଁକ ?" ଏ ପ୍ରଶ୍ନର ଉତ୍ତର କଏ ବା ଦେବ ? କେକେମା ସୁଲୋଚନାଦେବୀ ଅନନ୍ତଙ୍କୁ କୁଣ୍ଢାଇ ଧରି ବାହୁନି ଉଠିଲେ । ସ୍ୱାମୀ ସେ ପୁରକୁ ଗ୍ଲଲଗଲା ପରେ ପୁଅର ମୁହଁ ଦେଖି ସେ ବଞ୍ଚିରହିଥିଲେ । ଠାକୁର କାହିଁକି ଏମିତ ଦୁଃଖ ଦେଉଛନ୍ତି । ସେ ତାଙ୍କର କ'ଣ ବା ଦୋଷ କରିଛନ୍ତି । ମନଭିତରର ଝଡ଼କୁ ସମ୍ଭାଳି ପାରୁନାହାନ୍ତି ସୁଲୋଚନା ।

ଆରଘରେ ମହାଦେଇ ନିଷ୍ପ୍ରଭ ହୋଇ ବସି ରହିଛନ୍ତି । ଆଖିରେ ପଲକ ପଡ଼ୁନି । ଗତଦିନର ସୁଖକର ମୁହୂର୍ତ୍ତିସବୁ ଚଳଚିତ୍ର ପରି ଆଖିଆଗରେ ନାଚ ଯାଉଛି । ସେ ଏ ଘରକୁ ବୋହୂ ହୋଇ ଆସିଲା ଦିନର କଥା । କେତେ ଆଦର, କେତେ ସ୍ନେହ । ହେଲେ ଆଜି ସେ ସ୍ନେହ ଆଦର କ'ଣ ରହିବ । ଯାହା ମୁହଁକୁ ଗ୍ଲହିଁ ଦୁଃଖ, ଶୋକ ଭୁଲିଯାଇଥାନ୍ତି, ସେତ ପର କରି ଗ୍ଲଲିଗଲା । ଅମାନିଆ ଲୁହକୁ ସମ୍ଭାଳି ପାରୁନଥାନ୍ତି ସେ । କ'ଣ କରିବେ, ଏଇ ଚିନ୍ତା ଭିତରେ ସେ ନିଜର ପାରିପାର୍ଶ୍ୱିକ ଅବସ୍ଥାକୁ ଭୁଲି ଯାଇଥାନ୍ତି । ନାଃ ତାଙ୍କୁ କିଛି କରିବାକୁ ପଡ଼ିବ । ମନରେ ସାହାସ ଆଜି ଦମ୍ଭ । ହେଲେ ପତିବିହୀନ ହୋଇ ବଞ୍ଚିବାର ଲାଞ୍ଛନା ସେ ସହ୍ୟ କରି ପାରିବେ ନାହିଁ । "ହେ ଗ୍ଲଧାଗୋବିନ୍ଦ ! ତାଙ୍କୁ ନେଇଗଲ ମତେ ଏକୁଟିଆ କରିଗଲ କାହିଁକ ? ମତେ ବି ତାଙ୍କ ସାଥିରେ ନେଇ ଯାଅ ପ୍ରଭୁ । ଆଉ ଏ ବନ୍ଧନ ମତେ ଭଲ ଲାଗୁନି । ମତେ ମୁକ୍ତ କର—ମୁକ୍ତ କର—ଦେବତା···।" ଆଖିରେ ଶ୍ରାବଣର ଧାର ! କୋହ ସମ୍ଭାଳି ହେଉନାହିଁ ।

ପଟ୍ଟନାୟକ ପରିବାରର ଆକାଶରେ କଳା ମେଘର ଗୁଚ୍ଛ । ସେଇ ଗୁଚ୍ଛରେ କେହି କାହାରିକୁ ଚହ୍ନି ପାରୁ ନାହାନ୍ତି । ସମସ୍ତେ ଶୋକାଭିଭୂତ । ସାନ୍ତ୍ୱନା ଦେବ କଏ ? ଏଇ ସମୟରେ କଏ ଜଣେ ଆସି ଖବର ଦେଲା— ମହାଦେଇ ଆଉ କଥା କହିପାରୁ ନାହାନ୍ତି । ସମସ୍ତେ ଆର ଘରକୁ ଦୌଡ଼ିଲେ । ଆଉ କିଛି କହିବାର ନଥିଲା । ଜୟକୃଷ୍ଣଙ୍କ ସହିତ ହାତ ଧରାଧରି ହୋଇ ସେ'ବି ସେ ପୁରକୁ ଗ୍ଲଲିଗଲେ । "ଆଲୋ ତୋ ଝିଅଙ୍କ ମୁହଁକୁ ଟିକେ ଗ୍ଲହିଁଲୁନି ? ଅନନ୍ତ, କ୍ଷୀରଙ୍କୁ ନେଇ ମୁଁ ଏବେ କ'ଣ କରିବିଲୋ ମା' । ସ୍ୱାମୀ ସୋହାଗିନୀ ହେଲୁ । ମୋ ପିଲା ଏବେ କ'ଣ କରିବେ ?"—ସୁଲୋଚନା ଏତେ ଦୁଃଖରେ ବି ରାଗିଗଲେ ।

ଅନନ୍ତଙ୍କ ଆଖିରେ ଲୁହ । ମା ଯେମିତ ଶାନ୍ତିରେ ଶୋଇ ଯାଇଛନ୍ତି । ସିନ୍ଥିର ସିନ୍ଦୂର ଦାଉ ଦାଉ ହୋଇ ଜଳୁଛି । ମା'ର ଶବ ଉପରେ ଲେଟି ପଡ଼ିଲେ ଅନନ୍ତ । ସୁଲୋଚନା ଦେବୀ ଅନନ୍ତଙ୍କୁ ପ୍ରବୋଧନା ଦେବା ପାଇଁ ବାହାରକୁ ନେଇଗଲେ ।

ଗୋଟିଏ ଜୁଇରେ ଜୟକୃଷ୍ଣ ଏବଂ ମହାଦେଇଙ୍କ ଶରୀର କିଛିକ୍ଷଣ ମଧ୍ୟରେ ପାଉଁଶ ହୋଇଗଲା ।

ସୁଲୋଚନା ଦେବୀ ସାହସ ବାନ୍ଧିଲେ । ବାପ ମା' ଛେଉଣ୍ଡ ପିଲା ଦୁଇଟିଙ୍କି ମଣିଷ କରିବାକୁ ପଡ଼ିବ । ଏ ବେଳରେ ସେ ଯଦି ଭାଙ୍ଗି ପଡ଼ିବେ, ପିଲା ଦୁଇଟିଙ୍କି ସାହାରା ହେବ କିଏ ? ନିଜକୁ ନିଜେ ସାନ୍ତ୍ୱନା ଦେଲେ ସୁଲୋଚନା ଦେବୀ । ଅନନ୍ତ ଅବାକ୍ ହୋଇ ଜେଜେମାଙ୍କ ମୁହଁକୁ ଚାହିଁ ରହିଥିଲେ । କି କରୁଣ ସେ ଦୃଷ୍ଟି ?

କୋଣାର୍କ ନିକଟ ପିଶପୁର ଗାଁରେ ଅନନ୍ତଙ୍କ ମାମୁଁ ଘର । ମାମୁଁ ଆସି ଅନନ୍ତଙ୍କୁ ପିଶପୁର ନେଇଗଲେ । ମାମୁଁ ମାଇଁ ଯେତେ ସ୍ନେହ କଲେବି ମା'କୁ ଝୁରିହେଲେ । ଖାଇବା ପିଇବା ଠିକ୍ ରହିଲା ନାହିଁ । ଏ ଖବର ଚଣାହଟ୍ଟାରେ ଯାଇଁ ପହଞ୍ଚିଲା । ତା'ପରଦିନ ସୁଲୋଚନା ଦେବୀ ଆସି ପିଶପୁରରେ ହାଜର । ଜେଜେମାଙ୍କୁ ଦେଖି କାନ୍ଦି ଉଠିଲେ ଅନନ୍ତ । ସେଇଦିନ ନାତିକୁ ଧରି ସୁଲୋଚନା ଦେବୀ ଚଣାହଟ୍ଟା ଫେରି ଆସିଲେ । ଗାଁ ସ୍କୁଲରେ ପାଠ ପଢ଼ିଲେ ଅନନ୍ତ । ଅବଶିଷ୍ଟ କମେ ସମସ୍ତଙ୍କ ସ୍ନେହ ସହାନୁଭୂତିର ପାତ୍ର ହେଲେ ସେ । ଅନନ୍ତଙ୍କୁ ଏସବୁ ଭଲ ଲାଗୁନଥାଏ । ସେ ସବୁବେଳେ ଏକୁଟିଆ ରହିବାକୁ ଭଲ ପାଉଥାନ୍ତି । ଏକୁଟିଆ ଚାଲି ଚାଲି ସେ ଗାଁ ଶେଷମୁଣ୍ଡରେ ଥିବା ଖୋଲା ପଡ଼ିଆକୁ ଚାଲିଯାନ୍ତି । ପଥର ମୁଣ୍ଡା ଉପରେ ବସି ଭାବି ଚାଲନ୍ତି କେତେକଥା । ଏପ୍ରକାର ଚାଲି ଚଳଣି, ଆଚରଣ ଦେଖି ତାଙ୍କର ପିଉସୀ ତାଙ୍କୁ କଟକ ନେଇ ଆସିଲେ । କିଛିଦିନ କଟକରେ ପାଠପଢ଼ିଲାପରେ ଆଉଜଣେ ପିଉସୀଙ୍କ ସହ ସେ ପୁରୀ ଗଲେ । ଯେତେ ସୁଖରେ ରହିଲେ ମଧ୍ୟ ପିତାମାତାଙ୍କ ସ୍ମୃତି ତାଙ୍କୁ ସବୁଠି ବ୍ୟଥିତ କଲା । ସମସ୍ତେ ପ୍ରମାଦ ଗଣିଲେ । କ'ଣ କରିବେ ? ସୁଲୋଚନା ଦେବୀ ମଝିରେ ମଝିରେ ଆସି ଅନନ୍ତଙ୍କୁ ଦେଖି ଯାଉଥାନ୍ତି । ହେଲେ ଅନନ୍ତ ନିଜ ପ୍ରଚେଷ୍ଟାରେ ଅଟଳ । ନିଜ ମନ ଯେଉଁଠି ଅମାନିଆ, ସେଠି ଆଉ କୌଣସି ପ୍ରଲୋଭନ କାମ କରିବ ନାହିଁ । ସଂସାର ପ୍ରତି କେମିତି ବିତୃଷ୍ଣା ଚାଲି ଆସିଥିଲା ଅନନ୍ତଙ୍କର । ସ୍ମୃତିର ତୀବ୍ର ଜ୍ୱାଳାରେ ସେ ଅସହାୟ ହୋଇ ପଡ଼ୁଥାନ୍ତି ।

ପୁଣି କଟକ ଆସିଲେ ଅନନ୍ତ । ରେଭେନ୍ସା କଲିଜିଏଟ୍ ସ୍କୁଲରେ ନାମ ଲେଖାଇଲେ । ସେତେବେଳେ କଲିଜିଏଟ୍ ସ୍କୁଲର ପ୍ରଧାନ ଶିକ୍ଷକ ଥାଆନ୍ତି ଏସ୍. ଗୁପ୍ତ । ହୁଇଟ୍‌ମୋର୍ ଥାଆନ୍ତି ଟ୍ରେନିଂ କଲେଜର ଅଧ୍ୟକ୍ଷ ।

ଦିନକର କଥା—ଟେଷ୍ଟ ପରୀକ୍ଷା ଚାଲିଥାଏ । ଭାରତ ସାରା ସ୍ୱାଧୀନତା ସଂଗ୍ରାମର ସ୍ୱର ଝଙ୍କୃତ । ଟେଷ୍ଟ ପରୀକ୍ଷା ଖାତାରେ ଅନନ୍ତ ଲେଖିଲେ—"IN WAR OF INDEPENDENCE WHICH IS GOING TO BE WAGED WE STUDENTS SHOULD PARTICIPATE" ବିଚ୍ଛନ୍ଦ ଚରଣ ପଟ୍ଟନାୟକଙ୍କ ବଡ଼ଭାଇ ତଥା ସେଇ ସ୍କୁଲର ଶିକ୍ଷକ ପଞ୍ଚାନନ

ପଞ୍ଚନାତ୍ମକ ଏକଥା ପ୍ରଧାନ ଶିକ୍ଷକଙ୍କୁ ଜଣେଇ ଦେଲେ । ଏକଥା ହ୍ୟୁଇଟ୍ ମୋରଙ୍କ କାନକୁ ଗଲା ।

ହ୍ୟୁଇଟ୍ ମୋର ଅନନ୍ତଙ୍କୁ ଡକେଇ ପଠେଇଲେ । ସମସ୍ତଙ୍କ ଭିତରେ ଗୁପ୍‌ଚୁପ୍ ଗୁଞ୍ଜରଣ—"ଏଥର ଅନନ୍ତ ସ୍କୁଲରୁ ନିଶ୍ଚୟ ତଡ଼ା ଖାଇବ । ଇଂରେଜ ଶାସନରେ ରହି ଇଂରେଜମାନଙ୍କ ବିରୁଦ୍ଧରେ ଲେଖୁଛି । ଯେତେ ହେଲେବି ଭଲ ପିଲାଟା । କାହିଁକି ଏ ଦୁର୍ବୁଦ୍ଧି କଲା କେଜାଣି ?" ଅନନ୍ତଙ୍କର ଏସବୁ ଗୁଜବକୁ ଖାତିର ନଥାଏ । ସାହାସର ସହିତ ସେ ହ୍ୟୁଇଟ୍ ମୋରଙ୍କୁ ସାକ୍ଷାତ କଲେ । ମାତ୍ର ସମସ୍ତଙ୍କର ଆଶଙ୍କା ମିଥ୍ୟାରେ ପରିଣତ ହେଲା । ହ୍ୟୁଇଟ୍‌ମୋର ଅନନ୍ତଙ୍କ ପିଠି ଥାପୁଡ଼ାଇ କହିଲେ "ତମର ସାହାସକୁ ମୁଁ ସ୍ୱାଗତ ଜଣାଉଛି । ପାଠ ପଢ଼ିସାରି । ପରେ ଏସବୁ କରିବ । କ'ଣ ମନେରହିଲା ?" ଅନନ୍ତ ବାଧ ଛାତ୍ରଟି ପରି ସ୍ୱୀକୃତ ଜଣେଇ ବାହାରକୁ ଚାଲି ଆସିଲେ । ବାହାରେ ସାଥି ଛାତ୍ରବନ୍ଧୁ-ମାନଙ୍କର ମୁହଁ ଶୁଖି ଯାଇଥାଏ । ଅନନ୍ତଙ୍କ ହସ ହସ ମୁହଁ ଦେଖି ସେମାନେ ଯେମିତ ଜୀବନ ଫେରି ପାଇଲେ । ଅନନ୍ତ ହେଲେ ନୂଆ ଏକ ପୃଥିବୀର ଛାତ୍ର । ସହପାଠୀ ଏବଂ ଶିକ୍ଷକମାନଙ୍କ ମଧ୍ୟରେ ତାଙ୍କର ଆଦର ଅନେକ ପରିମାଣରେ ବଢ଼ିଗଲା ।

ରେଭେନ୍‌ସା କଲିଜିଏଟ ସ୍କୁଲରେ ଦଶମ ଶ୍ରେଣୀରେ ଅଧ୍ୟୟନ କରୁଥିବା ବେଳେ ସେ ହେଲେ 'ଛାତ୍ରବନ୍ଧୁ' (କଲିଜିଏଟ୍ ସ୍କୁଲର ମୁଖପତ୍ର) ର ପ୍ରଥମ ଛାତ୍ର ସମ୍ପାଦକ ।

ଏହାପୂର୍ବରୁ ସେ ନିୟମିତ ଭାବରେ ଛନ୍ଦୋବଦ୍ଧ ଦେଶାତ୍ମବୋଧ କବିତା-ମାନ ରଚନା କରୁଥିଲେ । ମାତ୍ର କୌଣସି ପତ୍ରପତ୍ରିକାରେ ଛପାଇବାପାଇଁ ସାହାସ କରିନଥିଲେ । ନବମଶ୍ରେଣୀରେ ପଢ଼ିବାବେଳେ ତାଙ୍କର ଜଣେ ସମ୍ପର୍କୀୟ ଭାଇ ସେ କବିତାଗୁଡ଼ିକ ବାଛି ବିଶ୍ୱନାଥ କରଙ୍କ ସମ୍ପାଦନାରେ ପ୍ରକାଶ ପାଉଥିବା 'ଉତ୍କଳ ସାହିତ୍ୟ' ପତ୍ରିକାକୁ ପଠାଇ ଦେଇଥିଲେ । ସେଥିରେ ତାଙ୍କର କବିତା ପ୍ରକାଶ ପାଇବାପରେ ସେ ବିଭିନ୍ନ ମହଲରେ ପରିଚିତ ହୋଇଗଲେ ।

ତାଙ୍କୁ ଯେତେବେଳେ ୧୬ ବର୍ଷ ସେ ଗାଁକୁ ଯାଇଥାନ୍ତି । ସେ ସମୟରେ କୁମାର ପୂର୍ଣ୍ଣିମା ପୂର୍ବରୁ ଗାଁର କୁମାରୀମାନେ ଘରେ ଘରେ 'କୁଆଁରୀ ପୁନେଇ ଗୀତ' ଗାଉଥାନ୍ତି । ବିଭିନ୍ନ ସ୍ୱର ଏବଂ ସମ୍ମିଳିତ ଧ୍ୱନିରେ ଗାଁ ଦାଣ୍ଡ ଉଚ୍ଛୁଳି ପଡ଼େ । ଅନନ୍ତଙ୍କର ସାହିତ୍ୟିକ ଜୀବନର ଆଦ୍ୟ ସ୍ଫୁରଣ ଘଟିଥିଲା ସେଇ କୁଆଁରପୁନେଇ ଗୀତ ଲେଖିବାରେ । ଲେଖୁ ଲେଖୁ ତାଙ୍କର ସମ୍ପର୍କୀୟ ଭଉଣୀମାନେ କହିଲେ—'ବାଃ ଖୁବ ସୁନ୍ଦର ଲେଖା ହୋଇଛି ?' ତାପରେ ସେଇ ଗୀତ ସ୍ୱରରେ ଗାଇବା ପରେ ଅନନ୍ତ ନିଜ ସୃଷ୍ଟିରେ ନିଜେ ଅଭିଭୂତ ହୋଇ ପଡ଼ିଥିଲେ ।

ମାଟ୍ରିକ୍ ପରୀକ୍ଷା ଦେଇ ସାରିବା ପରେ, ଗାନ୍ଧିଜୀଙ୍କ ଆହ୍ୱାନରେ ଅନନ୍ତ, ଲବଣ ସତ୍ୟାଗ୍ରହରେ ଯୋଗ ଦେଲେ । ଘରେ ତାଙ୍କର ଏଭଳି କାର୍ଯ୍ୟକଳାପକୁ କେହି ପସନ୍ଦ ନକଲେବି ମୁହଁରେ କିଛି କହି ପାରୁନଥାନ୍ତି । ବାପ, ମା ଛେଳିଏ ପିଲାଟା କାଳେ ମନଉଣା କରିବ ? ହେଲେ କେଜେମା ସୁଲୋଚନା ଦେବୀ ଉପରେ ନହେଲେ ବି ମନେ ମନେ ଖୁବ ଖୁସି ହେଉଥାନ୍ତି । ତାଙ୍କ ନାତି ଦେଶ ପାଇଁ କିଛି କରୁଛି ତ' ? ଲବଣ ସତ୍ୟାଗ୍ରହରେ ମାତିଥିବାବେଳେ ସେ ପୁଲିସରେ ବନ୍ଦୀ ହୋଇ କାରାବରଣ କଲେ । କିଛିଦିନ ପରେ ଖଲାସ ହୋଇ ପୁଣି ନିଜ କାମରେ ଲାଗି ପଡ଼ିଲେ ।

ସେଦିନ କଟକ କାଳିଗଳିର ଗଣେଶମନ୍ଦିର ପାଖରେ ଲବଣ ସତ୍ୟାଗ୍ରହ ସମ୍ପର୍କିତ ସଭାର ଆୟୋଜନ ହୋଇଥାଏ । ସେଠି ଅନନ୍ତ ଲୁଣ ବିକି କରୁଥିବା ବେଳେ ଗାଉଥିଲେ—

ଲୁଣ ନୁହେଁ ଏ ସେ ରକତର ଛିଟା
ବିକ୍ରି, ରାଜଗୁରୁ ମାଉଁଶ ଚକଟା।"

ଅନନ୍ତ ସ୍ୱାଧୀନତା ସଂଗ୍ରାମରେ ଅଂଶ ଗ୍ରହଣ କରି ଆଉ ପାଠ ପଢ଼ି ପାରିଲେ ନାହିଁ । ମାଟ୍ରିକ୍ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ ମଧ୍ୟ ପାଠ ପଢ଼ିବାକୁ ଇଚ୍ଛା ନଥାଏ । ପୁରୀ କଂଗ୍ରେସ କାର୍ଯ୍ୟାଳୟ ଥିବା ବେଳେ ସେ ସ୍ୱରାଜ ଗାଁତବୋଲି ଗ୍ରାଉଲ ଅଦାୟ କରି ଆଣନ୍ତି ଏବଂ ହାତରେ ଗ୍ରେପେଇ କରି ଖାଆନ୍ତି । ତାଙ୍କ ସହିତ ଗୋଦାବରୀଶ ମିଶ୍ରଙ୍କର ବ୍ୟକ୍ତିଗତ ସହାୟକ ଶଙ୍କର ଷଡ଼ଙ୍ଗୀ ମଧ୍ୟ ରହୁଥିଲେ । ଅନନ୍ତ ଗୀତ ଲେଖନ୍ତି ଏବଂ ଶଙ୍କର ତାଙ୍କର ସୁଲଳିତ କଣ୍ଠରେ ଗୀତଗୁଡ଼ିକ ଗାଇ ଦିଅନ୍ତି ।

ସେତେବେଳେ ପଣ୍ଡିତ ନୀଳକଣ୍ଠ ଦାସ, (ବ୍ୟବସ୍ଥାପକ ସଭାର ସଭ୍ୟ) କାକଟପୁର କଥା ବୁଝୁଥାଆନ୍ତି । ଦିନେ ସେ ଆସି ଅନନ୍ତ ଏବଂ ଶଙ୍କରଙ୍କ ସହ ରହିଲେ । ଶଙ୍କରଙ୍କ ଠାରୁ ଅନନ୍ତଙ୍କ ରଚିତ ଗୀତ ଗୁଡ଼ିକ ଶୁଣି ପଚାରିଲେ— "ଏ ଗୀତଗୁଡ଼ିକ କିଏ ଲେଖିଛିରେ ବାବା ।" ଶଙ୍କର ଚଟାପଟ ଉତ୍ତର ଦେଲେ 'ସାର ! ଆମ ଅନନ୍ତ ପରା ଲେଖିଛି । ନୀଳକଣ୍ଠ ଆଶ୍ଚର୍ଯ୍ୟ ହେଲେ । ଏତେ ଛୋଟ ପିଲାଟା ଏ ଭାବନାକୁ କେମିତି ସେ ଲେଖାରେ ପ୍ରକାଶିତ କରି ପାରୁଛି । ଏ ନିଶ୍ଚିତ ଭବିଷ୍ୟତରେ ଦିନେ ବଡ଼ କବି ହେବ । ତାପରେ ଅନନ୍ତକୁ ପାଖକୁ ଡାକି କହିଲେ—କୋଉଯାକେ ପାଠ ପଢ଼ିଛ ?

ମାଟ୍ରିକ ପାସ୍ କରିଛି ।

"କଲେଜରେ କାହିଁକି ପଢ଼ିଲନି ?" ନୀଳକଣ୍ଠ ପ୍ରଶ୍ନ କଲେ ।

ଅନନ୍ତ କିଛି ଉତ୍ତର ଦେଇ ପାରିଲେ ନାହିଁ । ନୀଳକଣ୍ଠଙ୍କ ମୁହଁରେ ଉତ୍ତର ଆସିଲା ଶ୍ଳେଷ ହସଟିଏ—"ଆରେ 'ବାବୁ'! ବେଶି ପାଠ ପଢ଼ିଲେ ଅଧିକ ଜ୍ଞାନ ହେବ । ତାପରେ ମୋ'ଠାରୁ ଆହୁ ଭଲ ତୁ ଲେଖିପାରିବୁ । କଲେଜରେ ନାଁ । ଲେଖାଇ ଯାଇ ମତେ ଦେଖାଇବୁ ।"

ଅନନ୍ତଙ୍କ ଜୀବନର ଗତିପଥ ଏଇ ପଦେ କଥାରେ ବଦଳି ଗଲା । ସେ ୧୬୩୦ ମସିହାରେ ରେଭେନ୍‌ସା କଲେଜରେ ନାଁ । ଲେଖାଇଲେ । ପୁରୀରେ ଥିଲାବେଳେ ସେ ପ୍ରାଣନାଥ ପଟ୍ଟନାୟକ, ଭଗବତୀ ଚରଣ ପାଣିଗ୍ରାହୀ, କାଳିନ୍ଦୀଚରଣ ପାଣିଗ୍ରାହୀ ପ୍ରମୁଖଙ୍କ ସଂସ୍ପର୍ଶରେ ଆସିଥିଲେ । କଟକ ଆସିଲା ପରେ ଅନନ୍ତ ନୂଆ ଏକ ଜୀବନର ସ୍ୱପ୍ନରେ ନିମଜ୍ଜିତ ହେଲେ ।

"ବୃଦ୍ଧ ହେ ତୁମ ଦିବସ ଯାଇଛି ଗୁଳି
ନବ ଜୀବନର ଆହ୍ୱାନ ଆସେ ଖରେ
ଗ୍ଳାନ୍ତିହିଅ ପଥ ନବୀନ ଆଲୋକ ଜାଳି
ତରୁଣ ବାହିନୀ ଛୁଟିରେ ଦର୍ପ ଭରେ ।   (ଅନନ୍ତ ପଟ୍ଟନାୟକ)

ଅନନ୍ତ କେବେ ସ୍ୱପ୍ନ ବିଳାସୀ ନଥିଲେ । ବୈପ୍ଳବିକ ମାନବବାଦ ହିଁ ତାଙ୍କ ଚିନ୍ତାଧାରାର ମୂଳ ତଥ୍ୟ ଥିଲା । ସେ ସ୍ୱପ୍ନ ଦେଖୁଥିଲେ ଏକ ଶ୍ରେଣୀହୀନ ଶୋଷଣମୁକ୍ତ ସମାଜର । ପିଲାଟି ଦିନରୁ ବାସ୍ତବତାର ସମ୍ମୁଖୀନ ହୋଇ ସେ ପଥର ପାଲଟି ଯାଇଥିଲେ । ତେଣୁ ଭାଗ୍ୟ ଏବଂ ଭଗବାନଙ୍କ ଉପରେ ତାଙ୍କର ଆଦୌ ବିଶ୍ୱାସ ନଥିଲା । ଫଳତଃ କୌଣସି ଗତାନୁଗତିକ ଅନୁମୋଦନକୁ ସେ ମାନୁ ନଥିଲେ ।

ରେଭେନସା କଲେଜରେ ସେ ଡକ୍ଟର ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ସମ୍ପର୍କରେ ଆସିଲେ । ନିଜକୁ ଭବିଷ୍ୟତରେ ଗଢ଼ି ତୋଳିବାର ମନ୍ତ୍ର ସେ ଏହି ରେଭେନ୍‌ସା କଲେଜରୁ ହିଁ ପାଇବେବୋଲି ଦୃଢ଼ ଆଶାପୋଷଣ କଲା ପରେ ସେ ନିଜ ଚେଷ୍ଟାରେ ବ୍ରତୀ ହେଲେ । ସବୁବେଳେ ତାଙ୍କ ଶ୍ରୁତିପଥରେ ଅନୁରଣିତ ହେଉଥିଲା ନୀଳକଣ୍ଠ ଦାସଙ୍କର ସେଇ କେତେପଦ କଥା ।

ଅନନ୍ତ ମନେ କରୁଥିଲେ ତରୁଣମାନେହିଁ ସମସ୍ତ ଶକ୍ତିର ଉତ୍ସ, ସୁପ୍ତ ଜାତିକୁ ସେମାନେ ହିଁ କେବଳ ଜାଗ୍ରତ କରିପାରିବେ । ତେଣୁ ସେ ତାରୁଣ୍ୟର ସଙ୍ଗୀତ ହିଁ କେବଳ ଗାନ କରିଛନ୍ତି । ୧୯୩୫ ମସିହାରେ ସେ ବି. ଏ. ପାସ୍ କଲେ । ଏହି ସମୟରେ ଗଢ଼ଜାତ ମିଶ୍ରଣ ଆନ୍ଦୋଳନରେ ଯୋଗଦେଇ ୧୯୩୭-୩୮ ମସିହାରେ ପୁଣି ଥରେ କାରାବରଣ କଲେ । ତାଙ୍କର ବୈପ୍ଳବାତ୍ମକ କବିତା ଗୁଡ଼ିକ ସେତେବେଳେ ହରେକୃଷ୍ଣ କିଶୋର ଦାସଙ୍କ ସମ୍ପାଦନାରେ 'ବାରୁଣୀ', ଲକ୍ଷ୍ମୀ-ନାରାୟଣ ସାହୁଙ୍କ ସମ୍ପାଦନାରେ 'ବୈତରଣୀ' ପ୍ରଭୃତି ପତ୍ରିକାରେ ପ୍ରକାଶ

ପାଉଥିଲା । ସେ ବିପ୍ଳବୀ 'ନବଯୁଗ ସାହିତ୍ୟ ସଂସଦ'ର ଜଣେ ସକ୍ରିୟ ସଭ୍ୟ ଥାଇ ନିଜର ସାମ୍ୟବାଦୀ ଚିନ୍ତାଧାରାକୁ ବଳିଷ୍ଠଭାବେ ଉପସ୍ଥାପନା କଲେ । ତାଙ୍କ ସହିତ ଥିଲେ ଭଗବତୀ ଚରଣ ପାଣିଗ୍ରାହୀ, ମନମୋହନ ମିଶ୍ର ପ୍ରମୁଖ ଅନେକ ଯୁବକ । ଗଡ଼ଜାତ ଆନ୍ଦୋଳନ ସମୟରେ ସେ 'କୃଷକ' ନାମକ ଏକ ପତ୍ରିକା ସମ୍ପାଦନା କରୁଥିଲେ । ସେଥିରେ ସେ କୃଷକମାନଙ୍କୁ ଉଦ୍‌ବୋଧନ ଦେଇ ଲେଖିଥିଲେ—

"ଝାଞ୍ଜି ପବନ ସନ୍ଧରେ ସଘନ
ଗନ୍ଧରେ ଖେଳିଲୁ ଧାନ ।
ବର୍ଷା, କାଦୁଅ, ଚକଟି କେତେରେ
ଷିଣ୍ଡି କଲୁ ପ୍ରାଣ ।"

—ବିପ୍ଳବର ସାମ ସଙ୍ଗୀତ ଗାଇ ଅନନ୍ତ ହେଲେ ସାମ୍ୟବାଦୀ ଚିନ୍ତାଧାରାର ବାର୍ତ୍ତାବହ । ଗାଁ, ଗଣ୍ଡା, ସହର, ବଜାର ବୁଲି ସେ ତାଙ୍କର ମତବାଦକୁ ପ୍ରଚାର କରିବାକୁ ଲାଗିଲେ । କେତେ ମାଡ଼ ଗାଳି, ନିର୍ଯ୍ୟାତନା ସହି ମଧ୍ୟ ସେ ନିଜ ପଥରୁ ଓହରି ଯାଇ ନାହାନ୍ତି । ବୁର୍ଜୁଆମାନଙ୍କ କବଳରୁ ଶୋଷିତ ମାନବ ସମାଜକୁ ରକ୍ଷା କରିବାକୁ ଯାଇ ସେ ହୋଇଛନ୍ତି ନିରାସକ୍ତ ଏବଂ ନିର୍ବିକାର, ଏହାମଧ୍ୟରେ ସେ 'ସପ୍ତଶଯ୍ୟା' ନାମକ ଓଡ଼ିଆ ଚଳଚିତ୍ରର ପ୍ରଯୋଜନା ଏବଂ ପରିଚାଳନା ସହ ସମ୍ପୃକ୍ତ ହୋଇଥିଲେ । ଅନନ୍ତ ଥିଲେ ବହୁମୁଖୀ ପ୍ରତିଭାର ଅଧିକାରୀ । ଜୀବନର ଗତିପଥରେ ଅନେକ ସମସ୍ୟା ଅନେକ ବାଧା ବିଘ୍ନର ସମ୍ମୁଖୀନ ହୋଇ ମଧ୍ୟ ସେ କେବେ ଭାଙ୍ଗି ପଡ଼ି ନାହାନ୍ତି । ସୁସ୍ଥ ମନ ଏବଂ ଧୀର ଚିତ୍ତରେ ଆଇ ସବୁର ସମାଧାନ କରିବା ତାଙ୍କ ଚରିତ୍ରର ଅନ୍ୟ ଏକ ଆକର୍ଷଣ ।

ସଂଗ୍ରାମୀ ଜୀବନ ଯାପନ କରି ଅନନ୍ତ କେବେ ବିବାହର ସ୍ୱପ୍ନ ଦେଖି ନଥିଲେ । ପାରିବାରିକ କାରଣରୁ ହେଉ କିମ୍ବା ମାନସିକ କାରଣରୁ ହେଉ ବିବାହ ବେଳେ ବେଳେ ଏକ ଆବଶ୍ୟକତା ହୋଇ ପଡ଼ିଥାଏ । ଜେଜେମା ସୁଲୋଚନା ଦେବୀଙ୍କ ତାଗିଦ୍—ତାଙ୍କର ନାତୁଣୀ ବୋହୂ ଦରକାର । ସେ ଆଉ ଘର ଚଳାଇ ପାରୁନାହାନ୍ତି । ଅନନ୍ତ କେତେଦିନ ବା ଜେଜେମାଙ୍କୁ ମନା କରି ପାରନ୍ତେ । ଶେଷରେ ତାଙ୍କର ବିବାହ ଯୋଡ଼ା ନିକଟବର୍ତ୍ତୀ ଦହମାଳ ଗଡ଼ିଆ ଗାଁ'ର "ଦିବ୍ୟସିଂହ ପଟ୍ଟନାୟକ"ଙ୍କ କନ୍ୟା ନୀରେଜପ୍ରଭାଙ୍କ ସହ ସ୍ଥିର ହେଲା । ଅନନ୍ତଙ୍କର ଶ୍ୱଶୁର ଥିଲେ ବ୍ରହ୍ମପୁର ଅଞ୍ଚଳରେ ଥିବା ଏକ ବିଦ୍ୟାଳୟର ପ୍ରଧାନ ଶିକ୍ଷକ । ଦେଶମିଶ୍ରଣ ଆନ୍ଦୋଳନ ବେଳେ ସେ ଓଡ଼ିଆମାନଙ୍କ ସ୍ୱାର୍ଥ ପାଇଁ ବହୁତ ସାହାଯ୍ୟ ଏବଂ ସହାନୁଭୂତି ପ୍ରଦର୍ଶନ କରିଛନ୍ତି । ଜଣେ ଆଦର୍ଶ ଶିକ୍ଷକ ଭାବେ ମଧ୍ୟ ସେ ରାଷ୍ଟ୍ରପତି ପୁରସ୍କାର ପ୍ରାପ୍ତ । ଅନନ୍ତଙ୍କୁ ଜ୍ୱାଇଁ କରି ନେବାରେ

ତାଙ୍କର କୌଣସି ମତାନ୍ତର ନଥିଲା । ନୀରେନ୍ଦ୍ରପ୍ରଭା ଖୁବ ଅଳ୍ପଦିନ ମଧ୍ୟରେ
ଅନନ୍ତଙ୍କ ସଂସାରକୁ ଚିହ୍ନିଗଲେ । ତାଙ୍କ ଚରିତ୍ରରେ ଏଇଠି ହିଁ ବିସ୍ମିତ ହେବାକୁ ହୁଏ ।
ଚିହ୍ନା ନାହିଁ, ଜଣାନାହିଁ ବିବାହପରେ ସେମାନେ ଅନ୍ୟଗୋଟିଏ ପରିବାର ସହ
ଏତେଶୀଘ୍ର ନିଜକୁ ସାମିଲ୍ କରି ନିଅନ୍ତି କେମିତି ? ଅନନ୍ତଙ୍କ ବହୁ ଦିନର ସ୍ୱପ୍ନ
ଫଳବତୀ ହେଲା । ନୀରେନ୍ଦ୍ରପ୍ରଭା କେବେ ଅଭିଯୋଗ କରିନାହାନ୍ତି—ଏଇଟା
ହୋଇଥିଲେ ଭଲ ହୋଇଥାନ୍ତା । ମୋର ଏଇଟା ନାହିଁ । ଏଇଟା ଆଣିବା
ଦରକାର । ଦୁଇଜଣଙ୍କର ଗୋଟିଏ କଥା । ମତଦ୍ୱୈଧ ହେବାର କୌଣସି
ଅବକାଶ ନାହିଁ । ସତେ ଯେମିତି ଗୋଟିଏ ବୃନ୍ତରେ ଦୁଇଟି ଫୁଲ । ଝଡ଼
ବର୍ଷା, ଝଞ୍ଜାକୁ ଖାତିର ନାହିଁ । ଜନ୍ମ ଜନ୍ମ ପାଇଁ ଏକାଠି ରହିବାକୁ କଳ୍ପନା
କରିଛନ୍ତି ଯେପରି ।

ଏଥର ଅନନ୍ତ ସଂସାରର ଦାୟିତ୍ୱ ସମ୍ପୂର୍ଣ୍ଣ ରୂପେ ନୀରେନ୍ଦ୍ରପ୍ରଭାଙ୍କ ହାତରେ
ସମର୍ପି ଦେଇ ଦେଶସେବାରେ ଲାଗି ପଡ଼ିଲେ । କିଛି ଦିନ ଅନନ୍ତ ସ୍ଥାନୀୟ
ସ୍କୁଲରେ ପ୍ରଧାନଶିକ୍ଷକ ଏବଂ ନୀରେନ୍ଦ୍ରପ୍ରଭା ଶିକ୍ଷୟିତ୍ରୀ ଭାବରେ କାର୍ଯ୍ୟ କରିଛନ୍ତି ।
ଏହାପରେ ଅନନ୍ତ 'ମୁକ୍ତିବାଣୀ' ପତ୍ରିକାର ସମ୍ପାଦକ, 'ସତ୍ୟବାଦୀ' ଓ 'ସମାଜ'ର
ସମ୍ପାଦନା ମଣ୍ଡଳୀରେ କିଛି କାଳ କାର୍ଯ୍ୟ କରିଥିଲେ ।

ଅନନ୍ତ ଏବଂ ନୀରେନ୍ଦ୍ରପ୍ରଭାଙ୍କ ସଂସାରକୁ ପୂର୍ଣ୍ଣ କରି ଆସିଲେ, ଆଲୋକେନ୍ଦୁ,
ଅମରେଶ, ମୈତ୍ରେୟୀ, ଏବଂ ଅଜନେଶ । ସୀମିତ ଆୟରେ ସଂସାର ଚଳାଇବା
ଅସମ୍ଭବ ହୋଇ ପଡ଼ିଲା । ସେ ସୋଭିଏତ୍ ଦେଶ ସମ୍ପାଦନା ମଣ୍ଡଳୀରେ ଯୋଗ
ଦେଲେ ।

ସେଠି ତାଙ୍କ ସହିତ ବଙ୍ଗଳା ଭାଷାର ପ୍ରତିଷ୍ଠିତ ଲେଖକ ଓ କବିମାନେ
କାମ କରୁଥାନ୍ତି । ଅବଶ୍ୟ ଅନନ୍ତଙ୍କୁ ଅନେକ ସମୟରେ ସେମାନଙ୍କ ପରିହାସର
ଶିକାର ହେବାକୁ ପଡ଼େ । କିନ୍ତୁ ଅନନ୍ତ କେବେ ହାରି ଯାଇ ନାହାନ୍ତି । ଥରେ
ଅନନ୍ତଙ୍କୁ ଫକୀରମୋହନଙ୍କ ଉପରେ କିଛି କହିବା ପାଇଁ କୁହାଗଲା । ବଡ଼
ଅଡୁଆରେ ପଡ଼ିଲେ ସେ । ଇଂରାଜୀରେ କହିବେ ନା ଓଡ଼ିଆରେ କହିବେ ।
ଶେଷରେ ବଙ୍ଗାଳୀ ବନ୍ଧୁମାନଙ୍କ ଅନୁରୋଧରେ ସେ ଓଡ଼ିଆରେ କହିଲେ । ଭାଷଣ
ପରେ ସମସ୍ତଙ୍କ ମୁହଁରେ ସନ୍ତୋଷର ଆଭାସ ଦେଖି ଅନନ୍ତ ବହୁତ ଖୁସି ହୋଇଥିଲେ ।

'ସୋଭିଏତ୍ ଦେଶ'ରେ ଦୁଇବର୍ଷ ଚାକିରି କଲାପରେ ବଡ଼ ପୁଅର ଅସୁସ୍ଥତା
ଏବଂ ଜନ୍ମମାଟିର ମୋହ ତାଙ୍କୁ ଓଡ଼ିଶା ଫେରାଇ ଆଣିଲା । ଏହାପରେ ସେ
ଗର୍କିଙ୍କର 'The Mother' ଉପନ୍ୟାସର ଓଡ଼ିଆ ଅନୁବାଦ (ମା) କରିଥିଲେ ।
ଭାରତ ସୋଭିଏତ୍ ମୈତ୍ରୀ ସଂଘ ପାଇଁ କାର୍ଯ୍ୟକରି ସେ ବହୁ ପ୍ରଶଂସାର ପାତ୍ର ।

ଏହାପରେ ସେ ଓଡ଼ିଶା ସରକାରଙ୍କର ପାଠ୍ୟପୁସ୍ତକ ଜାତୀୟକରଣ ସଂସ୍ଥାରେ ସମ୍ପାଦକ ହେଲେ । ଦୀର୍ଘ ୧୪ ବର୍ଷ କାଳ ନିଜର ଦାୟିତ୍ୱ ସୁନ୍ଦର ରୂପେ ସମ୍ପାଦନ କରି ସାରିବା ପରେ ସେ 'ଶିଶୁ ଲେଖା'ର ସମ୍ପାଦକ ହେଲେ। ଅସୁସ୍ଥତା ବଶତଃ ସେ ଶିଶୁ ଲେଖା ଛାଡ଼ିବାକୁ ବାଧ୍ୟ ହେଲେ । ଏବେବି ସେ ସାହିତ୍ୟ ସାଧନାରେ ବ୍ରତୀ । ଲେଖିବାର ଅଭ୍ୟାସ ସେ ଏପର୍ଯ୍ୟନ୍ତ ଛାଡ଼ିପାରି ନାହାନ୍ତି । ମନଭିତରେ କବିତାର ଛନ୍ଦ ଯେତେବେଳେ ଉଙ୍କି ମାରେ ସେ କାଗଜ କଲମ ଧରି ବସିପଡ଼ନ୍ତି । ତାପରେ ସେ ଭୁଲି ଯାଆନ୍ତି, ତାଙ୍କର ପରିବାର, ଦାୟିତ୍ୱ ବୋଧ ଏବଂ ପରିବେଶ । ଶାରୀରିକ ଅସୁସ୍ଥତା ତାଙ୍କୁ ତାଙ୍କର ଲକ୍ଷ୍ୟପଥରୁ ଟଳାଇ ପାରିନାହିଁ । ଆପଣ ଯଦି କେବେ ତାଙ୍କ ଘରେ ଅତିଥି ହୁଅନ୍ତି, ତେବେ ସେ ସ୍ୱଭାବ ସୁଲଭ ହସ ହସ ମୁହଁରେ ଆପଣଙ୍କୁ ସ୍ୱାଗତ ଜଣାଇବେ ଏବଂ ଫେରିଲା ବେଳେ ଯେତେ ମନା କଲେ ବି ସେ ଗେଟ୍ ପର୍ଯ୍ୟନ୍ତ ବଳେଇ ଦେବାକୁ ଆସିବେ । ଥରେ ପରୀକ୍ଷା କରି ଦେଖନ୍ତୁ ତ ?

"ପ୍ରେମେ ମୋର ନାହିଁ ମଦିର ଆବେଶ
ନାହିଁ ଅବସାଦ ଗନ୍ଧ
ଅଟେ ! ମୂଲସ୍ତେମ୍ ସୁରେ
ରଚିତ ନୁହେଁ ମୋ ଛନ୍ଦ
କୋଟି ଜୀବନର ବିକ୍ଷତ ପ୍ରାଣ ସ୍ପନ୍ଦନ କରିଛୁ ଅନ୍ଧ ।"

(ଅନନ୍ତ ପଟ୍ଟନାୟକ)

ଓଡ଼ିଆ ସାହିତ୍ୟର ବିପ୍ଳବୀ କବି ଅନନ୍ତ ପଟ୍ଟନାୟକଙ୍କ କବିତାରେ ସାମ୍ୟବାଦର ଉଦ୍‌ବେଳ ପ୍ରବାହ ଘୋଷଣା କରେ ଏକ ଶ୍ରେଣୀହୀନ ଶୋଷଣ ମୁକ୍ତ ସମାଜ । ଏହି କବି ତାଙ୍କର ତରୁଣ ଜୀବନରୁ ଆଜି ପର୍ଯ୍ୟନ୍ତ ସୃଷ୍ଟିଛନ୍ତି ବୁର୍ଜୁଆ ଗୋଷ୍ଠୀର ଶଳସ୍ତ । ସମାଜର ଶୋଷଣ ବିଲୋପ କରିବାକୁ ଯାଇ ସେ ଶୋଷିତର ଝଡ଼ରେ ବିପ୍ଳବର ସ୍ଫୁଲିଙ୍ଗ ସୃଷ୍ଟି କରିଛନ୍ତି । ପାରମ୍ପରିକ ସାମାଜିକ ଧାରା ବିରୁଦ୍ଧରେ ସେ ବିଦ୍ରୋହ ଘୋଷଣା କରିଛନ୍ତି ତାଙ୍କର ପ୍ରତ୍ୟେକ କବିତାରେ । ସକଳ ବୈଷମ୍ୟ ଏବଂ ଭେଦଭାବ ଶୂନ୍ୟ ଏକ ମଣିଷ ଜାତିର ସେ ସ୍ୱପ୍ନ ଦେଖିଛନ୍ତି । ତାଙ୍କର ଅନୁବାଦ ଶକ୍ତି ପ୍ରତିଭା ପାଇଁ ସେ ୧୯୬୮ ମସିହାରେ ସୋଭିଏତ୍ ଦେଶ ନେହେରୁ ପୁରସ୍କାର (ମା' ଉପନ୍ୟାସ ଅନୁବାଦ ପାଇଁ), ୧୯୮୧ ମସିହାରେ 'ଅବାନ୍ତର' କବିତା ଗ୍ରନ୍ଥ ପାଇଁ ସେ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ଏବଂ ଅନେକ ରାଜ୍ୟସ୍ତରୀୟ ପୁରସ୍କାର ଲାଭ କରିବାକୁ ସକ୍ଷମ ହୋଇଛନ୍ତି । ସେ ଗୋଟିଏ ମାତ୍ର ଗଳ୍ପ ଗ୍ରନ୍ଥ 'ଚଢ଼ା ଉତ୍ରାସ' ଲେଖିଛନ୍ତି । ପ୍ରତ୍ୟେକ ଗଳ୍ପରେ ସାମ୍ୟବାଦର ସ୍ୱର ଅତି ସୁନ୍ଦର ଭାବେ ପରିବେଷିତ ହୋଇଛି ।

ସନତ୍ ଦାସ ପଟ୍ଟନାୟକଙ୍କ ଦ୍ୱାରା ଅନୁଦିତ ଶିଭିଲ୍‌ସନ୍' ନାମକ ଇଂରାଜୀ କବିତା ବହି ହୋଇଛି ଅନନ୍ତଙ୍କ କେତେକ ଭଲ କବିତାର ଅନୁବାଦ । ତାଙ୍କ ରଚିତ କବିତା ଗ୍ରନ୍ଥଗୁଡ଼ିକ ହେଲା—ରକ୍ତଶିଖା, ଝଡ଼, ଯାଗ, ଶ୍ରେଣି, ବନ୍ୟା, ତର୍ପଣ କରେ ଆଜି, ଶାନ୍ତ ଶିଖା, କୃଷ୍ଣକୁ, ମଦନ କୌମୁଦୀ, ଅନ୍ଲେଙ୍କା ଲେଙ୍କା, ଗ୍ରୀଷ୍ମର ଛଟା, ଅବାନ୍ତର । ଅନୁବାଦ ପୁସ୍ତକଗୁଡ଼ିକ ହେଲା—ମା, ଶିକ୍ଷାନବିଶ, ଭାଗ୍ୟରୁ ଷିଏ । ପିଲାମାନଙ୍କ ପାଇଁ ଲେଖିଛନ୍ତି—କୁନୁ କୁନ (ପୁରସ୍କାର ପ୍ରାପ୍ତ), ଛବିଟିକ ଗପଟିଏ (ପୁରସ୍କାର ପ୍ରାପ୍ତ), ନପୁଞ୍ଜ ମାଇଁକ ଧପୁଡ଼ ମାଇଁ (ପୁରସ୍କାର ପ୍ରାପ୍ତ), ଲାଲ ଟୁକୁ ଟୁକୁ (ପୁରସ୍କାର ପ୍ରାପ୍ତ) ଭଲପଣ, କାଠର ଘୋଡ଼ା, ଏବଂ ସୂର୍ଯ୍ୟଟିଏ ସୁକୃତର ।

ସଂଘର୍ଷପୂର୍ଣ୍ଣ ଜୀବନର ସୁଅ କାଟି କାଟି ଅନନ୍ତ ସାଜିଲେ ବିପ୍ଳବୀ । ସମସ୍ତ ଶୋଷଣ, ଅତ୍ୟାଚାର, ବ୍ୟଭିଚାର ଲୋପକରି ଏକ ଶୋଷଣମୁକ୍ତ ସାମ୍ୟ ସମାଜ ଗଠନ ପାଇଁ ସେ ସାଜିଲେ ସଙ୍ଗ୍ରାମର କବି । ନବ ଯୁଗର ସୃଜନ ପାଇଁ ସେ ହେଲେ ଆଗୁଆନ । ସେହି କର୍ମଠ, ବିପ୍ଳବୀ କବି ଅନନ୍ତ ପଟ୍ଟନାୟକଙ୍କ ଦୃଢ଼ ସ୍ୱର ଆହ୍ୱାନକୁ ସମସ୍ତେ ସ୍ୱାଗତ କରିଛନ୍ତି ।

ଏବେ ଅନନ୍ତଙ୍କର ବଡ଼ପୁଅ ଆଲୋକେଶ ଜଣେ ପ୍ରତିଷ୍ଠିତ ଶିଳ୍ପପତି । ତା'ତଳପୁଅ ଅମରେଶ ପ୍ରତିଭାସମ୍ପନ୍ନ ଆଧୁନିକ କବି । ସମ୍ପ୍ରତି ସୋଭିଏତ୍ ଦେଶ ସମ୍ପାଦନା ମଣ୍ଡଳୀ ସହ ସମ୍ପୃକ୍ତ । ଅମରେଶଙ୍କ ମୈତ୍ରେୟୀ (ଝିଅ) ଜଣେ ଭୂତତ୍ତ୍ୱବିତ୍ । ତାଙ୍କର ସ୍ୱାମୀ ସୁଧାଂଶୁ ରାୟ ମଧ୍ୟ ଜଣେ ଭୂତତ୍ତ୍ୱବିତ୍ । ସବା ସାନ ପୁଅ ଅନମେଶ କୌଣସି ଏକ ଆନ୍ତର୍ଜାତିକ ସଂସ୍ଥାରେ ଚାକିରି କରି ଆମେରିକାରେ ଅବସ୍ଥାନ କରୁଛନ୍ତି । ମାଗ୍ରେଜ ପ୍ରଭା ଉତ୍କଳ ମହିଳା ସମିତିର ସମ୍ପାଦିକା ଏବଂ ଅନ୍ୟାନ୍ୟ ବହୁ ସାମାଜିକ ଅନୁଷ୍ଠାନ ସହ ଜଡ଼ିତ ଅଛନ୍ତି । ସାମାଜିକ ଅଗ୍ରଗତି ପାଇଁ ସେ ସାମୟିକ ଭାବରେ ପତ୍ର ପତ୍ରିକାରେ ଲେଖାଲେଖି କରନ୍ତି । ପରସ୍ପରରେ ଦୁଃଖ ସୁଖରେ ସାଥି ହୋଇ ଅନନ୍ତ ଏବଂ ମାଗ୍ରେଜପ୍ରଭା ଖୁବ୍ ଆନନ୍ଦରେ ଜୀବନ ଯାପନ କରୁଛନ୍ତି । ମନରେ କ୍ଷୋଭ ନାହିଁ, ଗ୍ଲାନି ନାହିଁ, ଅନୁଶୋଚନା ନାହିଁ । କେବଳ ଆନନ୍ଦ ଆଉ ଆନନ୍ଦ ।

"ଶୃଙ୍ଖଳ ମୁଁ ଶୃଙ୍ଖଳ
ଶବର ସଂସାରେ ପରେ ଶତ୍ୟର ସାଗର ସୃଜି
ଶୃଙ୍ଖଳ ମୁଁ ଶୃଙ୍ଖଳ ।
ରଶ୍ମିର ତୋଫାନରେ ଭସ୍ମର ଅସ୍ଥି ତା ଭସାଇ
ନରନ୍ଧ୍ର ନଶିରେ ଅଶ୍ଳେଷ ମୁଁ
ଆୟୁ !
ଧନର ବୃନ୍ତରେ ନିରକ୍ତ ଶିଶୁର ନିଃଶ୍ୱାସ ନସୁଇ

ଈଶ୍ୱର ପୋଷରେ ଜନ୍ତୁର କଲ୍ୟାଣ ଆଣି
ଗ୍ଳଲି ମୁଁ ଗ୍ଳଲି ।”                                    (ଅନନ୍ତ)

ଗ୍ଳଲନ୍ତେ ସ୍ରଷ୍ଟା ! ଗ୍ଳଲନ୍ତେ ସାଧକ ତୁମର ମନ୍ତ୍ର ପୂତଃ, ଶାଶ୍ୱତ ବାଣୀରେ ପୃଥିବୀରେ ଆଗାମୀ ଦିନ ଗୁଡ଼ିକ ଶାନ୍ତି ଏବଂ ଆନନ୍ଦର ପ୍ରତୀକ ହେଉ ।

ଶେଷରେ ଯୋଭିଏତ୍‌ର ବନ୍ଦ୍ୟା କବି ମାୟାକୋ ଭିସ୍କିର ସେହି କବିତା—

“Where is pain there am I
One every single tear that is Shed
I my Self crucified”

ଏହି ଆଦର୍ଶରେ ଅନୁପ୍ରାଣିତ ହୋଇ ଅନନ୍ତ ୭୨ ବର୍ଷରେ ପଦାର୍ପଣ କଲେଣି । ଏତେ ସଂଘର୍ଷ ଏବଂ ସଂଘାତ ମଧ୍ୟରେ ସେ ନୀତି ଏବଂ ଆଦର୍ଶରୁ କେବେ ବିଚ୍ୟୁତ ହୋଇ ନାହାନ୍ତି । ଉତ୍କଳ ପାଠକ ସଂସଦ ସେହି କାଳଜୟୀ ପ୍ରତିଭାଙ୍କୁ ସମ୍ମାନିତ କରି ତାଙ୍କର ସୁଖମୟ ଜୀବନ ଏବଂ ଆଲୋକିତ ଭବିଷ୍ୟତ କାମନା କରୁଛି ।

—o—

# ଦାଶରଥି ପଟ୍ଟନାୟକ

ଅଧ୍ୟାପକ **ଗୌରାଙ୍ଗଚରଣ ଦାଶ**

॥ ଏକ ॥

ଡେଙ୍ଗା, ପତଳା ବୁଢ଼ାଟିଏ । ବୟସର ଓଜନ ଦେହରେ ନଇଁ ହୋଇ ପଡୁଛି । ତଥାପି ଅଣ୍ଟା ଭାଙ୍ଗିଯାଇନି । କାଉଁରିଆ କାଠିପରି ଖାଡ଼ା । ମୁଣ୍ଡ ଉପରେ ଯୋଉ ଧୂକାଏ ବାଳ ରହିଯାଇଛି ସେଗୁଡ଼ିକ ନିଜର ରଙ୍ଗ ବଦଳେଇ ଦେଇ ସାରିଲେଣି । ଉଗ ଉଗ ଚାଲି । ପିଲା ମଣିଷଟିଏ ତାଙ୍କ ସାଙ୍ଗରେ ତାଳ ଦେଇ ଚାଲିଲେ ନାକେଦମ ହୋଇଯିବ । ଧୀରେ ସୁସ୍ଥେ ଚାଲିବାକୁ ଅନୁରୋଧ କରିବ । ପରିଧେୟ କହିଲେ ଦୁଇଖଣ୍ଡି ଲମ୍ବା ଗେରୁଆ ଗାମୁଛା । ଖଣ୍ଡିଏ ଅଣ୍ଟାରେ ଆଉ ଖଣ୍ଡିଏ ମୁଣ୍ଡରେ । ମୁଣ୍ଡ ଗାମୁଛା ଖଣ୍ଡିକ କେତେବେଳେ ଭିଡ଼ା ହୋଇ ଜଗନ୍ନାଥଙ୍କ ଠାକୁରିଆ ପରି ବନ୍ଧା ହୋଇଥାଏ ତ, କେତେବେଳେ ଚଉତରା ହୋଇ ପଡ଼ିଥାଏ । କାନ୍ଧରେ ଗୋଟିଏ ଝୁଲନ୍ତା ବସ୍ତା ଆକୃତିର ବ୍ୟାଗ । କାଗଜ, କଲମ, ବହି, ଖାତାରେ ଭର୍ତ୍ତି । କେବେ କେବେ କାଖତଳେ ବହି ପୁଳାଏ, ପତ୍ରିକା ପୁଳାଏ । ହାତରେ ଗାନ୍ଧିବୁଢ଼ାପରି ପେଟେ ଉଞ୍ଚର ଠେଙ୍ଗା । କୋଉ ଅଜଣା, ଅଚିହ୍ନା ଜାଗାକୁ ଚାଲିଗଲେ, ଲୋକେ 'ବାବା' ବୋଲି କହି-ପକାନ୍ତି । ଜଣାଶୁଣା ଚେହେରାରେ ଲୋକଟିଏ ଭେଟ ପଡ଼ିଗଲେ, ପ୍ରଥମେ ଚାଟଙ୍ଗ ହୋଇଯାଏ । ଦେଖେ ବାବାପରି ଧଡ଼ିଆ, ଡେଙ୍ଗା ଲୋକଟିଏ ତାକୁ ଆବେଗରେ କୁଣ୍ଢେଇ ଧରିଛି । ହସି ହସି କଥା କହୁଛି । ମନ କିଣି ନେଉଛି । ଯେମିତି କୋଉଜନମର ଚିହ୍ନା ମଣିଷଟିଏ । କୋଉ ଜନ୍ମର ସମ୍ପର୍କ-ନେଇ ଆସିଛି । ତା'ପରେ ଘରର ଭିତର ବାହାର ସବୁଆଡ଼େ ହାତ ବୁଲିଯାଏ । ଦେଖିଣ୍ଡି ଠାରୁ ଶୟନ ମନ୍ଦିର ପର୍ଯ୍ୟନ୍ତ । ମନମୁତାବକ ନିଜ ହାତ, ବ୍ୟାଗ ଓ ଚଦରବାଲ ମୁଣା ଭିତରକୁ ପଶିଆସନ୍ତି । ସତେ ଯେମିତି କୋଉ କାଳରୁ ଅଭୁକ୍ତ ରହିଥିବା ମାଗନ୍ତା ମଣିଷଟିଏ । ନିଜର ଦାରିଦ୍ର୍ୟ

ପ୍ରକାଶ କରିବାକୁ ଏତେ ଟିକେ ଲାଜ ବି ନାହିଁ । ଯୋଉଠି ନାହିଁ ସେଠି, ସାଧାରଣ ଭିକାରୀଠାରୁ ଆରମ୍ଭକରି ରାଜା, ମନ୍ତ୍ରୀ, ସଚିବ, ଗୁରୁ, ଶିକ୍ଷକ, କର୍ମଚାରୀ, ଘରଣୀ ସମସ୍ତଙ୍କ ପାଖରେ ହାତପତା ଚାଲିଛି । ଭିକାରୀଟିଏର ପାଞ୍ଚ ପଇସା ଓ ରାଜାଙ୍କର ପାଞ୍ଚ ହଜାର ଟଙ୍କା ଭିତରେ ପାର୍ଥକ୍ୟ ସେ ଦେଖି-ପାରନ୍ତିନି । ସବୁଠି ନିଜର ଦାରିଦ୍ର୍ୟ, ଅସହାୟତାର ଦାବିପତ୍ର । କେହି କିଛି କହି ପାରନ୍ତିନି । ସମସ୍ତେ ମୂକ ହୋଇଯାନ୍ତି । ଖାତାଉପରେ ନିଜର ନାଁ ନଲେଖି ଟିପ ଚିହ୍ନ ଦେଇଦିଅନ୍ତି । ଏଇ ସେ ହସକୁରା ବୁଢ଼ା ଦାଶରଥି ପଟ୍ଟନାୟକ । ଆପଣା ଜାତିର ଭାଷା, ସାହିତ୍ୟ, କଳା, ସଂସ୍କୃତିର ଟେକ ରଖିବା ପାଇଁ ଅନ୍ୟମାନଙ୍କ ପାଖରେ ଦେଖେଇ ଦେବାପାଇଁ ମହାଭିକାରୀ ଭେକରେ ସବୁଆଡ଼େ ଘୂରି ବୁଲୁଛନ୍ତି । ଜୀବନକୁ ପାଣି ଛଡ଼େଇ ଦେଇଛନ୍ତି । ଧନେ ଫରେଷ୍ଟ ଗାର୍ଡ଼ଟିଏ ହୋଇ ପଇସା କମେଇ ଧନୀ ହେବାପାଇଁ ଆପ୍ରାଣ ଚେଷ୍ଟା କରୁଥିବା ଯୁବକଟିଏ ଯେ ପରବର୍ତ୍ତି କାଳରେ ପିମ୍ପୁଡ଼ିଟିଏ ହୋଇଯିବ କିଏ ବା ବିଶ୍ୱାସ କରିଥିବ ?

ଦାଶରଥିଙ୍କ ଜନ୍ମ ୧୯୦୭ ମସିହା ଏପ୍ରିଲ୍ ମାସ ୧୩ ତାରିଖରେ, ବର୍ତ୍ତମାନ ପୁରୀ ଜିଲ୍ଲାର ଉଦୟପୁର ନାମକ ଏକ ପାହାଡ଼ିଆ ଗାଁରେ । ବାପାଙ୍କ ନାଁ ଶ୍ରୀଯୁକ୍ତ ବାଞ୍ଛାନିଧି ପଟ୍ଟନାୟକ (୧୮୭୦-୧୯୪୦) ଓ ମାଙ୍କ ନାଁ ପାର୍ବତୀ ଦେବୀ (-୧୭୯୬ । ଆପଣାର ଚାରି ଭାଇଙ୍କ ଭିତରେ ସେ ଜ୍ୟେଷ୍ଠ ଥିଲେ । ମଝିଆଁ ଦୁଇ ଭାଇ ନୀଳକଣ୍ଠବର୍ତ୍ତୀ ଗାଁକୁ ପୋଷ୍ୟପୁତ୍ର ହୋଇ ଚାଲିଯିବାରୁ [illegible] ଓ ଏବଂ ସାନଭାଇ ଗାଁରେ ରହିଲେ । ବାଞ୍ଛାନିଧି ଏକ ନିମ୍ନ ମଧ୍ୟବିତ୍ତ ୧୮ ବାରର ଲୋକଥିଲେ । ଚାଷ ଉପରେ ନିର୍ଭରକରି ପରିବାରଟି କେଣ [illegible] ଚଳିଯାଉଥିଲେ । ସେତେବେଳେ ଶିକ୍ଷା ପ୍ରତି ସାଧାରଣ ଜନତାର [illegible] ଆଗ୍ରହ ନ ଥିଲା କହିଲେ ଚଳେ । ତେଣୁ ଦାଶରଥି ଏକ ବଡ଼ିଲା ବୟ [illegible] ବିଦ୍ୟାରମ୍ଭ କରିଥିଲେ ଏବଂ ୧୯୨୨/୨୩ ସାଲ ବେଳକୁ ମାଇନର [illegible] ର ପଢ଼ିଲାବେଳେ, ତାଙ୍କ ପାଠ ପଢ଼ାରେ ଡୋରି ବନ୍ଧା ହୋଇ [illegible] ଥିଲା । ପରିବାରର ବଡ଼ପୁଅ ଥିବାରୁ ଘର ଚଳେଇବାର ଦାୟିତ୍ୱ [illegible] ଏକୁ ଉପଲବ୍ଧିକରି ଚାକିରି ଖୋଜିବାରେ ଲାଗିପଡ଼ିଲେ । ଫରେଷ୍ଟ [illegible] ଓ ଭାବରେ ଚାକିରି କରିବାପାଇଁ ତାଙ୍କ ମନରେ ପ୍ରବଳ ଆଗ୍ରହ [illegible] । ତେଣୁ ଚାକିରି କରିବା ପାଇଁ ଜଣେ ରେଞ୍ଜରଙ୍କ

ଜରିଆରେ ଉପରିସ୍ଥ ହାକିମଙ୍କୁ ଏକଶହ ଟଙ୍କା ଲାଞ୍ଚ ଦେଲେ ଚାକିରି କରେଇ ଦେବାପାଇଁ କଥା ଦେଇଥିବାରୁ ରେଞ୍ଜର ମହାଶୟଙ୍କ ବାରି ଘର ଓ ବୋଲ ହାକ କାମ ଆଠ ମାସ କାଳ ବିନା ବେତନରେ କରିଛନ୍ତି, ମାତ୍ର ଫଳ କିଛି ହେଇନ । ରେଞ୍ଜରଙ୍କ ପାଖରୁ ଚାଲି ଆସିଲ ପରେ ଖାଁ ସାହେବ ନାଁରେ ପରିଚିତଥିବା ସମ୍ବଲପୁର ଅଞ୍ଚଳର ଅବ୍ଦୁଲ ସତ୍ତାର ଖାଁଙ୍କ ଦପ୍ତରକୁ ଉକ୍ତ ଚାକିରି ନିମନ୍ତେ ଆବେଦନ କଲେ । ବହୁ କଷ୍ଟରେ ଖାଁ ସାହେବଙ୍କ ଦୟାରୁ ନୟାଗଡ଼ର ଇନସ୍‌ପେକ୍ଟରଙ୍କ ଘରେ ଚାକିରିଟିଏ ମିଳିଗଲେ । ମାସକୁ ଦରମା ମାତ୍ର ଆଠଟି ଟଙ୍କା, ମାତ୍ର କେତେକ କାରଣ ଯୋଗୁଁ ବଳାଙ୍ଗିର ଜିଲ୍ଲାର ବଡ଼ଝରି କ୍ୟାମ୍ପକୁ ତାଙ୍କୁ ଯିବାକୁ ପଡ଼ିଲା । ସେତେବେଳେ ତ ଆଜିପରି ଗଡ଼ି ଘୋଡ଼ାରେ ଯାତାୟାତର ଏତେ ସୁବିଧା ନଥିଲା । ତେଣୁ ଜଙ୍ଗଲ ବାଟରେ ପାଦରେ ଚାଲି ଚାଲି 'ବଡ଼ଝରି' ଆଡ଼କୁ ଆଗେଇଲେ; ମାତ୍ର ଯଥା ସମୟରେ ବଡ଼ଝରିରେ ପହଞ୍ଚିବା ସମ୍ଭବ ହେଲନି । ତାଙ୍କ ମଉସା ଯୋଗେଶ୍ୱର ମହାନ୍ତି ସେତେବେଳେ ବଉଦରେ ଚାକିରି କରୁଥାନ୍ତି । ସେ ବଉଦର ରାଜା ନାରାୟଣ ପ୍ରସାଦ ସିଂହ ଦେବଙ୍କ ଅଧୀନରେ ଶିକ୍ଷାବିଭାଗର ଅଫିସର (Education Officer) ଭାବରେ କାମ କରୁଥିବା ଶ୍ରୀଧର ଦାସଙ୍କ ସହିତ ଦାଶରଥିଙ୍କର ଭେଟ କରେଇ ଦେଲେ । ଯୋଗେଶ୍ୱର ଓ ଶ୍ରୀଧର ବାବୁଙ୍କ ଉଦ୍ୟମରେ ତାଙ୍କୁ ମନମୁଣ୍ଡା ଏଲ: ପି: ସ୍କୁଲରେ ଶିକ୍ଷକ ଚାକିରି ମିଳିଗଲା । ଶିକ୍ଷକତା ବୃତ୍ତିକୁ ସେ ଆଦରିନେଲେ ।

ଶିକ୍ଷକ ଚାକିରିଟିଏ ପାଇଲେ ସିନା, ଫରେଷ୍ଟ ଗାର୍ଡ଼ ହେବାପାଇଁ ମନରେ ଯେଉଁ ପ୍ରବଳ ଇଚ୍ଛାଥିଲା, ତାକୁ ସେ ଆଦୌ ଆଡ଼େଇ ଦେଇପାରୁ ନଥାନ୍ତି । ଚାକିରିରେ ହାତ ଚକ୍‌କଣ କରିଦେବାର ନିଶା ତାଙ୍କୁ ଅଥୟ କରି ପକାଉଥାଏ । ଏଥିପାଇଁ ନୟାଗଡ଼ର ହରେକୃଷ୍ଣ ସାମନ୍ତଙ୍କର ସାହାଯ୍ୟ ନେଲେ । ଫରେଷ୍ଟ ଡ଼ିପାର୍ଟମେଣ୍ଟରେ ଚାକିରିଟିଏ କରିବାପାଇଁ 'ଟ୍ରେନିଂ ସାର୍ଟିଫିକେଟ୍'ର ମଧ୍ୟ ଆବଶ୍ୟକତା ଥିଲା । 'ଚନ୍ଦକା'ରେ ଫରେଷ୍ଟ ଟ୍ରେନିଂପାଇଁ ଏକ ବେସରକାରୀ ଅନୁଷ୍ଠାନ ଥାଏ । ପଚିଶ ଟଙ୍କା ମନିଅର୍ଡରରେ କରିଦେଇ ସେ ସେଠି ନାଁ ଲେଖେଇଲେ ଏବଂ ଯଥା ସମୟରେ ସାର୍ଟି-ଫିକେଟଟିଏ ମଧ୍ୟ ମିଳିଗଲା । ମନମୁଣ୍ଡାରେ ମାତ୍ର ଚାରିବର୍ଷ ଶିକ୍ଷକତା କଲାପରେ ଚାକିରିରୁ ଇସ୍ତଫା ଦେଇ ଗାଁକୁ ଚାଲିଆସିଲେ ।

ଓଡ଼ିଶାର ଗଡ଼ଜାତ ଅଞ୍ଚଳଗୁଡ଼ିକ ପାଇଁ ସମ୍ବଲପୁର ସଦରରେ ଫରେଷ୍ଟ ଅଫିସ ଥାଏ । ଟ୍ରେନିଂପରେ ସେ ଉକ୍ତ ସଂସ୍ଥାକୁ ଚାକିରିଟିଏ ପାଇଁ ଦରଖାସ୍ତ କଲେ । ୧୯୩୮ ମସିହାରେ ରେଞ୍ଜର ଫରେଷ୍ଟ ଡିଭିଜନରେ ଚାକିରିଟିଏ ମିଳିଗଲା । ସେତେବେଳେ ମାସିକ ଦରମା ଥିଲା ମାତ୍ର ପନ୍ଦର ଟଙ୍କା । ୧୯୩୮ ମସିହାଠାରୁ ୪୭ ମସିହା ପର୍ଯ୍ୟନ୍ତ ସେ ଚାକିରିରେ ରହିଥିଲେ । ଇତିମଧ୍ୟରେ ଆପଣାର ଆକାଂକ୍ଷିତ ବୃତ୍ତିରେ ବ୍ୟବସ୍ଥିତ ହୋଇପାରିଲା ପରେ ନିକଟବର୍ତ୍ତୀ ଗାଁର ପୂର୍ଣ୍ଣମାସୀ ଦେବୀଙ୍କୁ ବିବାହ କଲେ । ଅବଶ୍ୟ ବିବାହବେଳକୁ ପୂର୍ଣ୍ଣମାସୀଙ୍କ ବୟସ ୨୨।୨୩ ବର୍ଷ ହୋଇଯାଇଥିଲା । ସେ ସମୟରେ ବ୍ରାହ୍ମଣ ପରିବାରରେ ବାଲ୍ୟ ବିବାହ ପ୍ରଥାର ପ୍ରାଧାନ୍ୟ ଥିଲେ ବି କରଣ ପରିବାରରେ ଏ ପ୍ରଥାକୁ ଏତେ ଗୁରୁତ୍ୱ ଦିଆଯାଉ ନଥିଲା । ସେଇଁ ବୃତ୍ତି ପ୍ରତି ତାଙ୍କ ମନରେ ପ୍ରବଳ ଝୁଙ୍କ ଥିଲା, ମାତ୍ର କେତୋଟି ବର୍ଷ କଟେଇ ଦେଲାପରେ ପୂର୍ବର ଆବେଗ ଓ ଉତ୍ତେଜନା ବହୁ ପରିମାଣରେ କମିଯାଇଥିଲା । ସେ ଶାନ୍ତି ପାଇପାରିଲେନି । ଏଣେ ୧୯୩୪ ମସିହାରେ ସାନ ଭାଇଟି ସ୍କୁଲରେ ଯୋଗ ଦେଲା । ବାପାଙ୍କର ମଧ୍ୟ କାଳ ହୋଇଗଲା । ଘରର ପରିସ୍ଥିତି ଅଧିକରୁ ଅଧିକ ଜଟିଳ ହେବାରେ ଲାଗିଲା । ବଡ଼ପୁଅ ହୋଇଥିବା ଯୋଗୁ ଘରର ସବୁଯାକ ଦାୟିତ୍ୱ ତାଙ୍କ ଉପରେ ନ୍ୟସ୍ତ ହୋଇପଡ଼ିଲା । ନବବିବାହିତ ଯୁବତୀ-ସ୍ତ୍ରୀ ଓ ବିଧବା ବୋଉ ବ୍ୟତୀତ ଆଉ ଘରେ କେହି ନ ଥା'ନ୍ତି । ତେଣୁ ସେ ଚାକିରି ଛାଡ଼ିଦେଇ ଗାଁକୁ ଚାଲି ଆସିଲେ ।

୧୯୫୭ ମସିହାର କଥା । ସମକାଳରେ ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ଅମିନ ଚାକିରିରେ ନିଯୁକ୍ତି ପାଇଁ ବହୁ ସଂଖ୍ୟାରେ ସରଭେ ଟ୍ରେନିଂ ସେଣ୍ଟରମାନ ଖୋଲୁଥାଏ । କେତେକ କାରଣ ଯୋଗୁଁ ନୟାଗଡ଼ରେ ପ୍ରତିଷ୍ଠିତ ଅନ୍ୟ ଏକ "ସରଭେ" ଟ୍ରେନିଂ ସ୍କୁଲର ଶିକ୍ଷକ ଉମ୍ବରଧର ଷଡ଼ଙ୍ଗୀଙ୍କ ସହିତ ତାଙ୍କର କନ୍ଦଳ ସୃଷ୍ଟି ହେବାରୁ ସେ ନିଜେ ଏକ ସ୍କୁଲ ଗଠନ କଲେ । ଶିକ୍ଷକ ରଖି ପିଲାମାନଙ୍କୁ ତାଲିମ ଦେଲେ । ଆପଣା ଜିଦ୍‌କୁ ବଜାୟ ରଖିବାପାଇଁ ଦୁଇ ଏକର ଜମି ମଧ୍ୟ ବିକି କରିଦେବାକୁ ପଛେଇଲେନି । ଉକ୍ତ ଅର୍ଥ ସ୍କୁଲପାଇଁ ଆବଶ୍ୟକୀୟ ଉପକରଣ କ୍ରୟରେ ହିଁ ବ୍ୟୟିତ ହୋଇଥିଲା । ମାତ୍ର ସ୍କୁଲଟି ଅଳ୍ପ କେଇଟି ବର୍ଷ ପରେ ଭାଙ୍ଗିଯାଇଥିଲା ।

ସରଭେ ଟ୍ରେନିଂ କାର୍ଯ୍ୟରେ ବ୍ୟସ୍ତ ଥିଲାବେଳେ ସେ ଅଞ୍ଚଳର ସରବରାକାର ସ୍ଥାନଟି ଖାଲିପଡ଼ିଲା । ସରବରାକାରମାନେ ଜମିଜମାର ଖଜଣା ଆଦାୟ କରିବା କାମ ସହିତ ଲୋକମାନଙ୍କ ମଧ୍ୟରେ ଏ ସମ୍ପର୍କୀୟ ବିବାଦର ସମାଧାନରେ ମଧ୍ୟ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରୁଥିଲେ । ଉକ୍ତ ବୃତ୍ତି ବାବଦ ମଧ୍ୟ ଏକଶହ ଟଙ୍କା ବେତନ ତାଙ୍କୁ ମିଳୁଥିଲା । ଏହି ସମୟରେ ମଧ୍ୟ ନିଜ ଉଦ୍ୟମରେ ପ୍ରାୟ କୋଡ଼ିଏ ଏକର ସରକ ଜମି ନିଜର କରିପାରିଥିଲେ । ନିଜ ଉଦ୍ୟମ ଓ ଦୈହିକ ଶ୍ରମରେ ଜଙ୍ଗଲ ସଫାକରି, ମା'ଟି ସାଙ୍ଗରେ ମାଟି ଦେଇ ଜମିଗୁଡ଼ିକୁ ଉତ୍ପାଦନକ୍ଷମ କଲେ । ଫରେଷ୍ଟ ଚାକିରିରେ ଥିଲାବେଳେ ଯାହା କରିପାରିନଥିଲେ ସରବରାକାରୀ ବୃତ୍ତିରେ କିନ୍ତୁ ତା'ଠାରୁ ଯଥେଷ୍ଟ କାମ କରିପାରିଲେ । ସ୍ୱାଧୀନ ଭାରତର ସରକାର ପରେ ଏହି ଚାକିରୀକୁ ଉଠେଇ ଦେବାରୁ, କ୍ଷତିପୂରଣ ବାବଦ ତାଙ୍କୁ ୬୦୦ ଟଙ୍କା ମିଳିଥିଲା । ଉକ୍ତ ବୃତ୍ତି ଦାଶରଥିଙ୍କ ପରିବାରର ଆର୍ଥିକ ସ୍ୱଚ୍ଛଳତାକୁ ଫେରେଇ ଆଣିବାରେ ସାହାଯ୍ୟ କରିଥିଲା କହିଲେ ଚଳେ ।

## ॥ ଦୁଇ ॥

୧୯୫୫ ମସିହା ପରେ ସାରା ଓଡ଼ିଶାରେ "ପାଠାଗାର ଆନ୍ଦୋଳନ" ଆରମ୍ଭ ହୋଇଥିଲା । ସରକାର ମଧ୍ୟ ପାଠାଗାର ପ୍ରତିଷ୍ଠା କରିବା ପାଇଁ ଲୋକମାନଙ୍କୁ ବହୁ ଭାବରେ ସାହାଯ୍ୟ କରୁଥିଲେ । ତେଣୁ ସରକାରୀ ସାହାଯ୍ୟ ପାଇବା ଆଶାରେ ଗାଁ ଗାଁରେ ପାଠାଗାରମାନ ଗଢ଼ି-ଉଠିଲା; ମାତ୍ର ପାଠାଗାରଟିଏ ଗଢ଼ିବାର ଚିନ୍ତା ପ୍ରଥମେ ଦାଶରଥିଙ୍କ ମୁଣ୍ଡକୁ ଡ଼କ ନଥିଲା । ପ୍ରାୟ ସଦାସର୍ବଦା ସେ ଘରର କଞ୍ଜାଳରେ ବ୍ୟସ୍ତ ରହୁଥିଲେ । ତେଣୁ ବାପାଙ୍କ ଅମଳରୁ ତାଙ୍କ ଘରେ ଯେଉଁ କେତେକ ପୋଥି ପୁରାଣ ଥିଲା, ଅନ୍ୟ ଗାଁର ଲୋକମାନେ ସେ ସମସ୍ତ ମାଗି ନେଇଗଲେ । ବାପାଙ୍କ ପଣ୍ଡିତ ବନ୍ଧୁଙ୍କ ପାଖରୁ ଶୁଣିଲେ । ମାତ୍ର ଆପଣାର ପଢ଼ିବାର ଆଗ୍ରହ ଏବଂ ଏଥି ନିମିତ୍ତ ଅନ୍ୟ ବନ୍ଧୁମାନଙ୍କ ଆନ୍ତରିକ ପ୍ରେରଣା ଏକ ପାଠାଗାର ଗଢ଼ିବା ପାଇଁ ଦାଶରଥିଙ୍କ ମନରେ ଯଥେଷ୍ଟ ଆଗ୍ରହ ସୃଷ୍ଟି କଲା । ତାତ୍କାଳିକ ନୂଆ ଗାଁ ବ୍ଲକର ଚେୟାରମ୍ୟାନ ଶ୍ରୀଯୁକ୍ତ ଉମ୍ବରୁଧର ଷଡ଼ଙ୍ଗୀ ଓ ନୂଆ ଗାଁ ଅପରପ୍ରାଇମେରୀ ସ୍କୁଲର

ହେଡ ପଣ୍ଡିତ ଶ୍ରୀଯୁକ୍ତ ଲୋକନାଥ ତ୍ରିପାଠୀ ତାଙ୍କ ଆଖି ଖୋଲିଦେଲେ । କିନ୍ତୁ ଗୋଟିଏ ବଡ଼ ଜିନିଷ ଗଢ଼ିବାର ସଂକଳ୍ପ ତାଙ୍କୁ ଫକୀର ସଜେଇ ଦେଲା । ୧୯୫୯ ମସିହା ମେ ମାସ ପାଞ୍ଚ ତାରିଖର ଏକ ସୁନ୍ଦର ସନ୍ଧ୍ୟାରେ ଲୋକନାଥ ତ୍ରିପାଠୀ ଭଗବତ ପଡ଼ି ପାଠାଗାରର ଶୁଭାରମ୍ଭ କଲେ । ଶ୍ରୀମଦ୍ ଭାଗବତର ଦଶମସ୍କନ୍ଧର ଗୋପଲୀଳା, ବଳରାମ ଦାସଙ୍କ ଲକ୍ଷ୍ମୀପୁରାଣ, ଖୁଦୁରୁକୁଣୀ ଓଷା, ଆଗ୍ନେୟ ଗୀତା ଓ କଳଙ୍କିଧର ତିନି ବାକ୍ସକୁ ସମ୍ବଳକରି ପାଠାଗାରର ଆରମ୍ଭ ହୋଇଗଲା ।

ମଣିଷ ଆପଣାର ଲକ୍ଷ୍ୟସ୍ଥଳଠାରୁ ଯେତେଦୂରରେ ଥାଉନା କାହିଁକି, ଆନ୍ତରିକ ନିଷ୍ଠା ଓ ଶ୍ରମ ସେ ଦୂରତାକୁ କମେଇ ଦିଏ । ମଣିଷ ସତ୍ୟର ନିକଟବର୍ତ୍ତୀ ହୁଏ । ଦାଶରଥିଙ୍କ କ୍ଷେତ୍ରରେ ଠିକ୍ ତାହାହିଁ ଘଟିଲା । ପାଠାଗାରର ଆରମ୍ଭ ହୋଇଗଲା ସତ୍ୟ, ମାତ୍ର ପୁସ୍ତକ କିଣିବାପାଇଁ ହାତରେ ଅର୍ଥ କି ସମୟ ମଧ୍ୟ ନାହିଁ । ଏଣେ ପରିବାର ବନ୍ଧନ ଓ ସମସ୍ୟା । ପଟ୍ଟନାୟକ ବଂଶର ଅହଙ୍କାର, ପରିବାରର ଓ ଅର୍ଥ ସମସ୍ୟାର ନିଷ୍ପେଷଣ ମଧ୍ୟରେ ଦାଶରଥି କାବୁଲ୍ଲୁ ହୋଇ ଠିଆହୋଇଗଲେ । ନିଷ୍ପେଷଣର ବାହାରେ ଜୀବନ ଓ ଆପଣାର ଲକ୍ଷ୍ୟ । ଆଭିଜାତ୍ୟର ଅହଂକାରକୁ ନଈ ପାଣିକୁ ଫୋପାଡ଼ି ଦେଇ ପଟ୍ଟନାୟକ ବଂଶର ଜ୍ୟେଷ୍ଠ କୁମର ଘରକୁ ଘର ଭିକ ମାଗି ବୁଲିଲେ । ତିନି ହଳ ବଳଦର ଚାଷ, ପିଲାମାନଙ୍କର ଭବିଷ୍ୟତ ଓ ଘରର ହାନିଲାଭକୁ ଘରଣୀ ଓ ବୁଢ଼ୀ ବୋଉର ଜିମାଦେଇ ଦାଣ୍ଡକୁ ବାହାରି ଆସିଲେ । ଚାଷରୁ ଉପାର୍ଜିତ ପଦାର୍ଥରେ ପରିବାରର ଅଭାବ ଉତ୍ତୁରିଯାଏ । ଗୁରୁଆଳମାନେ ଯେଉଁ ଟଙ୍କା ଓ ଧାନ ଘାଗ ବାବଦ ଦିଅନ୍ତି, ଯେତକ ଅଣ୍ଟିରେ ପୂରେଇ ନିଜ ଗୃହକୁ ଆସନ୍ତି । କିନ୍ତୁ ବନଦା ପଇସା ଟିକିର ଲୋକମାନଙ୍କୁ କରଜ ଦିଅନ୍ତି । ସୁଧ ବାବଦକୁ ମଧ୍ୟ କିଛି ମିଳିଯାଏ । ସୁଧପଇସା ମଧ୍ୟ ଡାକଘରେ ଜମା ରଖି ଦିଅନ୍ତି । ସରକାରୀ ବୃତ୍ତି ହାତମୁଠାରୁ ଖସିଗଲା ପରେ କ୍ଷତିପୂରଣ ବାବଦ ଯେଉଁ ୭୦୦ ଟଙ୍କା ମିଳିଥିଲା, ସେଥିରୁ କିଛି ମଧ୍ୟ ପାଠାଗାର ଭିତରେ ପଶିଲା । ତଥାପି ଦାଶରଥିଙ୍କ ମନରେ ଶାନ୍ତି ଆସେନା ।

କେଉଁ କେଉଁ ପୁସ୍ତକ ପାଠାଗାର ପାଇଁ କିଣାହେବ, ଏ ସମ୍ପର୍କର ତାଲିକା ଉପରୁଧର ଷଡ଼ଙ୍ଗୀ ପ୍ରସ୍ତୁତ କରୁଥିଲେ । ତାଲିକାଟି ଧରି ଦାଶରଥି

ସେ ଅଞ୍ଚଳର ମାନ୍ୟଗଣ୍ୟ, ଧନୀ, ସରକାରୀ କର୍ମଚାରୀ, ଶିକ୍ଷକ ଆଦି ବିଭିନ୍ନ ବ୍ୟକ୍ତିଙ୍କ ଦ୍ୱାରସ୍ଥ ହେଉଥିଲେ ଏବଂ ଯେଉଁ ବ୍ୟକ୍ତି ଯେଉଁ ଯେଉଁ ପୁସ୍ତକମାନ କିଣିଦେବାପାଇଁ ସମ୍ମତି ପ୍ରଦାନ କରୁଥିଲେ ସେମାନଙ୍କ ନାଁ ଟିପି ଆଣୁଥିଲେ । ମୁଖ୍ୟତଃ "ନୋବେଲ୍ ପ୍ରାଇଜ ସିରିଜ"ର ଓଡ଼ିଆ ଅନୁବାଦ ପୁସ୍ତକଗୁଡ଼ିକ ପ୍ରାଥମିକ କାଳରେ କ୍ରୟ କରାଯାଉଥିଲା । କଟକ ଆସି ପୁସ୍ତକଗୁଡ଼ିକ କିଣିନେଲାପରେ ସମ୍ମତି ପ୍ରଦାନ କରିଥିବା ବ୍ୟକ୍ତିମାନଙ୍କ ଠାରୁ ଟଙ୍କା ମାଗି ଆଣୁଥିଲେ । ପ୍ରକାଶନ ସଂସ୍ଥାଗୁଡ଼ିକ ଉପରେ ଯେଉଁ କେତେଭାଗ ଟଙ୍କା ଛାଡ଼ ଦେଉଥିଲେ, ସେତିକି ଅର୍ଥରେ ମଧ୍ୟ ଆଉ କେତେକ ପୁସ୍ତକ କିଣାଯାଇପାରୁଥିଲା । କାରଣ ପ୍ରତିଶ୍ରୁତି ଦେଇଥିବା ବ୍ୟକ୍ତିମାନଙ୍କଠାରୁ ପୁସ୍ତକର ପୂରାମୂଲ୍ୟ ସେ ହିଁ ଆଦାୟ କରୁଥିଲେ । କଟକ ଗଲାବେଳେ ଘରୁ ସାଙ୍ଗରେ ଚୂଡ଼ା, ଗୁଡ଼ କନାରେ ବାନ୍ଧି ନେଇଯାଉଥିଲେ ଏବଂ ଭୂଦାନ ଅଫିସରେ ମଧ୍ୟ ଡେରା ପକାଉଥିଲେ । ନୂଆଗାଁ ରୁ କଟକ ଯିବା ଓ ଆସିବା ଖର୍ଚ୍ଚ ଭାଗବତଘରମାନଙ୍କ ପ୍ରଦତ୍ତ ଅର୍ଥରୁ ହିଁ ଚଳାଯାଉଥିଲା । ଏତଦ୍‌ବ୍ୟତୀତ ଆଖପାଖ ଗାଁର ବିଭିନ୍ନ ଲୋକମାନଙ୍କଠାରୁ ମଧ୍ୟ ନୂଆ ପୁରୁଣା ପୁସ୍ତକମାନ ମାଗିଆଣି ପାଠାଗାରକୁ ପୁଷ୍ଟ କରୁଥିଲେ । ଏବେ ପାଠାଗାରରେ ପ୍ରାୟ ୨୫ ହଜାରରୁ ଊର୍ଦ୍ଧ୍ୱ ସଂଖ୍ୟକ ବିଭିନ୍ନ କିସମର ପୁସ୍ତକ ରହିଥିବାର ଜଣାଯାଏ ।

ପାଠାଗାର ଆରମ୍ଭର ପ୍ରାଥମିକ କାଳରେ ସରକାରୀ ସାହାଯ୍ୟ ପାଇବାପାଇଁ ସେ ଏତେ ନିଘା ଦେଉ ନଥିଲେ । ତାଙ୍କ ପୂର୍ବରୁ ନୂଆଗାଁ ଠାରେ ମଧ୍ୟ କେତେକ ଉଦ୍ୟମୀ ବ୍ୟକ୍ତି ଏକ ପାଠାଗାର ଗଠନ କରିସାରିଥିଲେ । ନୂଆଗାଁଠାରୁ ଉଦୟପୁରର ଦୂରତା ମାତ୍ର ତିନି କିଲୋମିଟର । ଏଣେ ନୂଆଗାଁ ଠାରେ ବ୍ଲକର ମୁଖ୍ୟ କାର୍ଯ୍ୟାଳୟ ହୋଇଥିବାରୁ କେତେକ ପ୍ରଭାବଶାଳୀ ବ୍ୟକ୍ତି ପାଠାଗାରଟିକୁ ଏଇଠାରେ ହିଁ ସ୍ଥାପନ କରିବାପାଇଁ ଖୁବ୍ ଜୋରସୋରରେ ଲାଗିପଡ଼ିଥିଲେ । ଏପରି ଘଟିବା ମଧ୍ୟ ସ୍ୱାଭାବିକ । ବଡ଼ ବଡ଼ଆଙ୍କ କଥା ଓ କାମର ଜାଲ୍ ଭିତରକୁ ନ ପଶି ସରକାରୀ ସାହାଯ୍ୟ ପ୍ରତି ଏତେ ଦୃଷ୍ଟି ନଦେଇ ନିଜେ ପାଠାଗାରରେ ପୁସ୍ତକ ସଂଖ୍ୟା ବଢ଼େଇବାରେ ଲାଗିଲେ । ପାଠାଗାରର ନିୟମ କାନୁନ୍ ସମ୍ପର୍କରେ ମଧ୍ୟ ତାଙ୍କର ଏତେ ଧାରଣା ନଥିଲା କହିଲେ ଚଳେ । ଶ୍ରୀଧର ଦାସ ପାଠାଗାରର 'ନିୟମାବଳୀ'ଟିଏ ପ୍ରସ୍ତୁତ କରିଦେଲେ । ସରକାରୀ ସାହାଯ୍ୟ ପାଇବାପାଇଁ

ଆବେଦନ କରିବାକୁ ବ୍ଲକ କାର୍ଯ୍ୟାଳୟଗୁଡ଼ିକ ମୁଖ୍ୟ ସରକାରୀ ଦପ୍ତରକୁ ଆଦେଶନାମା ଦେଲାପରେ, ଅନ୍ୟ ବନ୍ଧୁମାନଙ୍କ ପ୍ରରୋଚନାରେ ବା: ଡ୍ରେ:ଙ୍କ ଜରିଆରେ ସେ ଦରଖାସ୍ତ କଲେ । ସରକାରୀ ଅନୁଦାନରେ ଅଧିକ କାଳ ବନ୍ଦ କରିବାର ମସୁଧା ତାଙ୍କୁ ଏ ବାଟରେ ନଜା ଦେବାପାଇଁ ଉତ୍ସାହ ଦେଲା । ସରକାରଙ୍କ ସମାଜ ମଙ୍ଗଳ ବୋର୍ଡ଼ ହିଁ ପାଠାଗାରଗୁଡ଼ିକୁ ଅନୁମୋଦନ କରୁଥିଲେ । ପ୍ରମିଳା ମହାନ୍ତି ଓ ସମାଜ ମଙ୍ଗଳ ବିଭାଗ ପଦସ୍ଥ କର୍ମଚାରୀ କୁଳମଣି ପଣ୍ଡାଙ୍କ ଅକୁଣ୍ଠ ସାହାଯ୍ୟ ଯୋଗୁ ଏକ ସମୟରେ ପାଠାଗାର ଓ ନେହେରୁ ଶିଶୁ ମଣ୍ଡଳୀ ଦୁଇଟିଯାକ ଅନୁଷ୍ଠାନକୁ ରେଜେଷ୍ଟ୍ରି କରିଦେଲେ । ଅନୁଷ୍ଠାନ ଦୁଇଟି ସରକାରଙ୍କ ତାଲିକାଭୁକ୍ତ କରିବାର ପ୍ରତ୍ୟେକଟି ପାଇଁ ପଚିଶ ଟଙ୍କା କରି ଫିସ୍ ଦାଖଲ କରିବାକୁ ପଡ଼ିଥିଲା । ଏହା ୧୯୬୨ ମସିହାର କଥା । ଏଥିନିମିତ୍ତ କଟକରେ ମଧ୍ୟ ତାଙ୍କୁ ୮।୯ ଦିନ କଟେଇବାକୁ ପଡ଼ିଥିଲା । ମାତ୍ର ସେହି ଆଗ୍ରହ ନେଇ ସେ ଏତେ ପରିଶ୍ରମ କଲେ, ସରକାରଙ୍କଠାରୁ ସାହାଯ୍ୟ ପାଇଲା ପରେ, ସେ ଆଗ୍ରହ ମଉଳି ଯିବାକୁ ଆରମ୍ଭ କଲା । ସାମାନ୍ୟ ସରକାରୀ ସାହାଯ୍ୟରେ ଯେକୌଣସି ଅନୁଷ୍ଠାନ ପୁଷ୍ଟ ହୋଇ ନପାରେ ଏପରି ଏକ ଧାରଣା ତାଙ୍କ ମନରେ ଜନ୍ମ ହେଲା । ୧୯୬୨ ମସିହାରେ ସାହାଯ୍ୟ ବାବଦ ପ୍ରାପ୍ତ ଟ ୩୮-୦୦ଙ୍କା ଓ ୧୯୬୪ ମସିହା ବେଳକୁ ଟ୧୦୦ଙ୍କାକୁ ବୃଦ୍ଧି ପାଇଲା । ମାତ୍ର ପାଠାଗାରକୁ ସମୃଦ୍ଧ କରିବା ପାଇଁ ସେ କାନ୍ଧରେ ଝୁଲି ଧରି ଓଡ଼ିଶା ଭ୍ରମଣ କରିବାରେ ଲାଗିପଡ଼ିଲେ । ସାଂସାରିକ ଜଞ୍ଜାଳମୟ ଜୀବନ ତାଙ୍କୁ ଅର୍ଥହୀନପରି ବୋଧହେଲା । ଖରା, ବର୍ଷା, ଶୀତର ଅତ୍ୟାଚାର ତାଙ୍କ ଦେହ ଓ ମନକୁ ଅବଶ କରିଦେଇ ପାରିଲାନି । 'ପ୍ରଥମେ ପାଠାଗାର ତାପରେ ଆଉ କିଛି' ତାଙ୍କ ଜୀବନର ଲକ୍ଷ୍ୟରେ ପରିଣତ ହୋଇଗଲା । 'ନଇ ଆଉ କିଛି' ତାଙ୍କ ଚେତନାକୁ କାବୁ କ... ...ପାରିଲାନି ।

୧୯୬୮ ମସିହା ପର୍ଯ୍ୟନ୍ତ ପତ୍ରିକା ସଂଗ୍ରହ କରିବାର ଆବଶ୍ୟକତା ସେ ଉପଲବ୍‌ଧି କରିପାରି ନଥିଲେ । ୧୯୬୯ ମସିହାରେ 'ନବଜୀବନ' ପତ୍ରିକାରେ ଗୁରୁଂଗୋଟି ସଂଖ୍ୟା ପ୍ରଫେସର ଚିତ୍ତରଞ୍ଜନ ଦାସଙ୍କର ଆଦଶ୍ୟକ ପଢ଼ିଲା । ସେତେବେଳେ ଚିତ୍ତରଞ୍ଜନ ଆଗ୍ରାରେ ଅବସ୍ଥାନ କରୁଥାନ୍ତି ।

ଶତ୍ରୁରଞ୍ଜନଙ୍କୁ ପତ୍ରିକା ଯୋଗାଇ ଦେବା ଉଦ୍ଦେଶ୍ୟରେ 'ନବ ଜୀବନ' ପତ୍ରିକାର ସମ୍ପାଦକ ଶ୍ରୀଯୁକ୍ତ ଚିନ୍ତାମଣି ମିଶ୍ରଙ୍କର ଦ୍ୱାରସ୍ଥ ହେଲେ । ମାତ୍ର ଶ୍ରୀଯୁକ୍ତ ମିଶ୍ରଙ୍କ ପାଖରେ ମଧ୍ୟ ପତ୍ରିକା ପାଇବା ସମ୍ଭବ ହେଲାନି । ଗ୍ରାହକମାନଙ୍କଠାରୁ ପତ୍ରିକା ଖୋଜିବାପାଇଁ ସେ ଦାଶରଥିଙ୍କୁ କହିଦେଲେ । ସମ୍ପାଦକଙ୍କଠାରୁ ଗ୍ରାହକମାନଙ୍କର ଠିକଣା ଆଣି ସେ ପତ୍ରିକା ଖୋଜିବାରେ ଲାଗିପଡ଼ିଲେ । ଏହା ୧୯୬୯ ମସିହା ଜାନୁଆରୀ ମାସର ୧୦ ତାରିଖର ଘଟଣା । ପତ୍ର ପତ୍ରିକାରେ ଆବଶ୍ୟକତାର ଗୁରୁତ୍ୱ ଉପଲବ୍ଧି କଲାପରେ ବହି ସଂଗ୍ରହ ପ୍ରତି ଏତେ ଆଖି ନଦେଇ ପତ୍ରିକା ଖୋଜିବାରେ ଲାଗିଗଲେ । ଯେଉଁ ଅନୁଷ୍ଠାନ ଓ ବ୍ୟକ୍ତିବିଶେଷମାନଙ୍କ ପାଖରେ ପତ୍ରିକା ରହିଛି ସେ-ମାନଙ୍କୁ ଖୋଜିବାରେ ଲାଗିପଡ଼ିଲେ । ସେ ସମ୍ପାଦକ ଓ ଗ୍ରାହକମାନଙ୍କ ଦ୍ୱାରସ୍ଥ ହେଲେ । ବହୁ ସାଧାରଣ ଗ୍ରାହକ ଆଗ୍ରହର ସହିତ ପୁରୁଣା ପତ୍ର ପତ୍ରିକାମାନ ଦେଇ ଦେବାରେ ଲାଗିଲେ । ଗ୍ରାହକ, ସମ୍ପାଦକ ପତ୍ରିକା ରଖିଥିବା ବିଭିନ୍ନ ବ୍ୟକ୍ତି ଓ ଅନୁଷ୍ଠାନଗୁଡ଼ିକ ସମ୍ପର୍କରେ 'ମନମୋହନ ପୁସ୍ତକାଳୟ'ର ଶ୍ରୀଯୁକ୍ତ ପ୍ରଫୁଲ୍ଲ ଦାସ ତାଙ୍କର ନିର୍ଦ୍ଦେଶକ ଥିଲେ କହିଲେ ଚଳେ । ଶ୍ରୀ ପଠାଣି ପଟ୍ଟନାୟକ ଯଦିଓ ନିଜେ କିଛି ଦାଶରଥିଙ୍କୁ ଦେଇନାହାନ୍ତି; ତଥାପି ତାଙ୍କଠାରୁ ଗୁପ୍ତଧନର ମାଲିକମାନଙ୍କ ସମ୍ପର୍କରେ ବହୁ ତଥ୍ୟ ପାଇବା ସମ୍ଭବ ହୋଇପାରିଥିଲା । ମୁଖ୍ୟତଃ ଲକ୍ଷ୍ମୀନାରାୟଣ ମହାନ୍ତି, ମହେଶ୍ୱର ମୂଳିଆ, ପ୍ରଫୁଲ୍ଲ ଦାସ, ଚିନ୍ତାମଣି ମିଶ୍ର, ରଣଧୀର ଦାସ, ସୁରେନ୍ଦ୍ର ମହାନ୍ତି ପ୍ରମୁଖ ବିଶିଷ୍ଟ ବ୍ୟକ୍ତିମାନଙ୍କଠାରୁ ସେ ବହୁ ସଂଖ୍ୟକ ପତ୍ରିକା ସଂଗ୍ରହ କରିଛନ୍ତି । ମୁକୁର, ସହକାର, ଉତ୍କଳ ସାହିତ୍ୟ, ଶଙ୍ଖ, ଚତୁରଙ୍ଗ, ଦିଗନ୍ତ, ଆରତି, ଆଧୁନିକ, ଉତ୍ତର, ନଆଁ ତୃଷ୍ଣା, ଝଙ୍କାର, ଜୀବନରଙ୍ଗ, ଆଜିକାଲି ପ୍ରଭୃତି ବିଂଶ ଶତକର ବହୁସଂଖ୍ୟକ ନୂଆ-ପୁରୁଣା ପତ୍ର-ପତ୍ରିକା ପାଠାଗାରରେ ସଞ୍ଚିତ ରହିଛି । ମାତ୍ର ଊନବିଂଶ ଶତକର ବିଶିଷ୍ଟ ପତ୍ର-ପତ୍ରିକାଗୁଡ଼ିକ ସଂଗ୍ରହ କରିବା ସଂଗ୍ରାହକଙ୍କ ପକ୍ଷରେ ସମ୍ଭବ ହୋଇପାରିନି । ବହୁବିଳମ୍ବରେ ସେ ପତ୍ରିକା ସଂଗ୍ରହ କାର୍ଯ୍ୟରେ ମନ ବଳାଇଥିବାରୁ ଏହା ହୁଏତ ସମ୍ଭବ ହୋଇପାରିନି । ଯେଉଁ ବ୍ୟକ୍ତିମାନଙ୍କ ପାଖରେ ଦୁର୍ଲ୍ଲଭ ପତ୍ରିକାଗୁଡ଼ିକ ରହିଛି, ସେମାନେ ଉକ୍ତ ପାଠାଗାରକୁ ଦାନ କରିଦେଇ ପାରିଲେ, ଗବେଷକମାନେ ହୁଏତ ଅଧିକ ଉପକୃତ ହୋଇପାରିବେ । ସମ୍ପ୍ରତି ପ୍ରକାଶ ପାଉଥିବା ବହୁ ନୂତନ ପତ୍ରିକାରେ ଉକ୍ତ

ପାଠାଗାର ଏକ କୋଠାଘରପରି ମନେହୁଏ । ବିଭିନ୍ନ ଜାଗାରୁ ପତ୍ରିକା-ଗୁଡ଼ିକୁ ମିଶାଇ ଏବେ ପ୍ରାୟ ୩୦ ହଜାରରୁ ଊର୍ଦ୍ଧ୍ୱ ସଂଖ୍ୟକ ପତ୍ରିକା ଅନୁଷ୍ଠାନରେ ଥିବାର ଜଣାଯାଏ । ସାହିତ୍ୟ ପତ୍ରିକାଗୁଡ଼ିକ ବ୍ୟତୀତ ସମାଜ, ପ୍ରଜାତନ୍ତ୍ର, ଧରିତ୍ରୀ, ମାତୃଭୂମି, ସ୍ୱରାଜ, ପ୍ରଗତିବାଦୀ ଆଦି ସମ୍ବାଦପତ୍ର-ଗୁଡ଼ିକର ପ୍ରାୟ ପ୍ରତ୍ୟେକ ସଂଖ୍ୟା ଏଠାରେ ସୁରକ୍ଷିତ ହୋଇଛି । ଏବେ ମଧ୍ୟ ଦାଶରଥି ବିଭିନ୍ନ ଅଞ୍ଚଳରୁ ପତ୍ରିକା ଖୋଜା କାମରେ ଲାଗିପଡ଼ିଛନ୍ତି । ଆପଣାର ବାପାଙ୍କର ସ୍ମୃତି ଉଦ୍ଦେଶ୍ୟରେ ଉକ୍ତ ପାଠାଗାରକୁ 'ବାଙ୍କନିଧି ପାଠାଗାର' ନାମରେ ନାମିତ କରିଛନ୍ତି ।

॥ ତିନି ॥

ପାଠାଗାର ପରେ ୧୯୭୩ ମସିହାରେ - ଭାରତସରକାରଙ୍କ ରେଜିଷ୍ଟ୍ରେସନ ନିୟମ ଅନୁସାରେ 'ଶ୍ରୀ ଅରବିନ୍ଦ ସଂଗ୍ରହାଳୟ' ସରକାରଙ୍କ ତାଲିକାଭୁକ୍ତ ହୋଇଛି । ସଂଗ୍ରହାଳୟଟିର ପ୍ରତିଷ୍ଠା ପଛରେ ଦାଶରଥିଙ୍କ ସାନ ଭଉଣୀଙ୍କ ପ୍ରେରଣା ହିଁ ମୁଖ୍ୟତଃ ଦାୟୀ । ଦାଶରଥିଙ୍କ ସାନଭାଇ ନିରଞ୍ଜନ ପଟ୍ଟନାୟକ ଜଙ୍ଗଲ ବିଭାଗର ରେଞ୍ଜର ଥାନ୍ତି । ବାର ଜାଗାରେ ବାବନା ଭୂତପରି ବୁଲବୁଲି କରିବାରୁ ମଧ୍ୟ ତାଙ୍କ ସ୍ୱାସ୍ଥ୍ୟ ବାରମ୍ବାର ଅସୁସ୍ଥ ହୋଇପଡ଼େ । ତେଣୁ ଅର୍ଥ ସାହାଯ୍ୟ ପାଇଁ ବହୁ ସମୟରେ ତାଙ୍କୁ ଭଉଣୀଙ୍କ ପାଖରେ ହାତ ପତେଇବାକୁ ପଡ଼େ ।

ଭଉଣୀ ସ୍ୱତଃପ୍ରବୃତ୍ତ ହୋଇ ମଧ୍ୟ ବହୁ ପରିମାଣ ଅର୍ଥ ତାଙ୍କୁ ସାହାଯ୍ୟ କରିଛନ୍ତି । ତେବେ ବହୁ ସମୟରେ ଟଙ୍କା ପଇସାଗୁଡ଼ିଏ ସେ ଦାଶରଥିଙ୍କ ହାତକୁ ଟେକି ଦିଅନ୍ତି । ପଇସା ମୁଦ୍ରାଗୁଡ଼ିକ ଭିତରେ ଥିବା ପୁରୁଣା ବା ଭିନ୍ନ ପ୍ରକାରର ମୁଦ୍ରାଗୁଡ଼ିକୁ ସେ ସଂଗ୍ରହ କରି ରଖିଦିଅନ୍ତି । ମୁଦ୍ରା ସଂଗ୍ରହ କରିବାର ଅଭ୍ୟାସ ପ୍ରାଚୀନ ପଦାର୍ଥ ସଂଗ୍ରହ କରିବାପାଇଁ ତାଙ୍କ ମନରେ ଆଗ୍ରହ ସୃଷ୍ଟି କଲା । ସମ-କାଳରେ ଶ୍ରୀଯୁକ୍ତ ଅର୍ଜୁନ ଯୋଶୀଙ୍କ ପ୍ରେରଣା ମଧ୍ୟ ତାଙ୍କୁ କମ୍ ଉତ୍ସାହ ଦେଇନି । ତେଣୁ ଯୋଉଠି ଯାହା ପାଇଲେ ସଂଗ୍ରହ କରିବାରେ ଲାଗି-ପଡ଼ିଲେ । ମାଟି, ପଥର, ଗୋଡ଼ି, ଖପର ଠାରୁ ଆରମ୍ଭକରି ଭାରତ ଓ ଭାରତ ବାହାରର ବିଭିନ୍ନ ଦେଶର ପ୍ରାଚୀନ ମୁଦ୍ରା, ବିଭିନ୍ନ ସମୟରେ ପାଇକ ସୈନ୍ୟମାନଙ୍କ ଦ୍ୱାରା ବ୍ୟବହୃତ ଅସ୍ତ୍ରଶସ୍ତ୍ର, ତୋପ, କମାଣ, ଓଡ଼ିଶାର ଶିଳ୍ପୀମାନଙ୍କ ଦ୍ୱାରା ପ୍ରସ୍ତୁତ ବିଭିନ୍ନ ସମୟର ହସ୍ତଶିଳ୍ପ, ବୟନ

ଶିଳ୍ପ, ପ୍ରାଚୀନ ମୂର୍ତ୍ତି, ବିଭିନ୍ନ ଗୋଷ୍ଠୀର ବ୍ୟକ୍ତିମାନଙ୍କ ଦ୍ୱାରା ବ୍ୟବହୃତ ଅଳଙ୍କାର ବିଶେଷ, ଦେଶ ବିଦେଶର ଡାକ ଟିକେଟ, କାଗଜ ନୋଟ, ବିଭିନ୍ନ ବ୍ୟକ୍ତିଙ୍କର ଫଟୋଚିତ୍ର, ଦେଶ ବିଦେଶର ବିଭିନ୍ନ ସମୟର ମାନଚିତ୍ର, ଓଜନ ଓ ମାପ ପ୍ରଣାଳୀର ନମୁନା, କୁଣ୍ଢେଇ, ବହୁପ୍ରାଚୀନ ନଥିପତ୍ର, ବିଶିଷ୍ଟ ବ୍ୟକ୍ତିବିଶେଷଙ୍କ ଚିଠିପତ୍ର, ସାମୁଦ୍ରିକ ଜୀବମାନଙ୍କର କଙ୍କାଳବିଶେଷ ଆଦି ବହୁ ପଦାର୍ଥ ଉକ୍ତ ସଂଗ୍ରହାଳୟରେ ସ୍ଥାନ ପାଇଛି । ବହୁ ବିଶିଷ୍ଟ ସାହିତ୍ୟିକ ଶିଳ୍ପୀ, ବୁଦ୍ଧିଜୀବୀ, ସ୍ୱାଧୀନତା ସଂଗ୍ରାମୀମାନଙ୍କର ସନ୍ତକ ଓ ସ୍ୱାକ୍ଷରକୁ ଯତ୍ନର ସହିତ ରଖିବା ମ୍ୟୁଜିଅମର ଅନ୍ୟ ଏକ ବୈଶିଷ୍ଟ୍ୟ । ଶ୍ରୀଯୁକ୍ତ ଯୋଶୀଙ୍କ ଆନ୍ତରିକ ସାହାଯ୍ୟ ଓ ଉତ୍ସାହ ଦାନ ଯୋଗୁ ଉକ୍ତ ଅନୁଷ୍ଠାନଟି ରେଜିଷ୍ଟ୍ରି ହେବା ସଙ୍ଗେ ସଙ୍ଗେ କେନ୍ଦ୍ର-ସରକାରଙ୍କଠାରୁ ଆର୍ଥିକ ସାହାଯ୍ୟ ପାଇବା ସମ୍ଭବ ହୋଇପାରିଛି । କେନ୍ଦ୍ରୀୟ ଅନୁଦାନରେ ମଧ୍ୟ ଅଧିକ ଦୁର୍ଲ୍ଲଭ ପଦାର୍ଥ କ୍ରୟ କରିବାପାଇଁ ସେ କ୍ଷମ ହୋଇପାରିଛନ୍ତି ।

ସଂଗ୍ରହାଳୟ ପାଇଁ ପ୍ରାଚୀନ ପୋଥି ପତ୍ର ସଂଗ୍ରହର ଉଦ୍ୟମ ମଧ୍ୟ ବେଶି ଦିନର ନୁହେଁ । ପ୍ରଜାତନ୍ତ୍ର ସମ୍ବାଦପତ୍ରର ପ୍ରାକ୍ତନ ସମ୍ପାଦକ ଶ୍ରୀଯୁକ୍ତ ଶ୍ରୀହର୍ଷ ମିଶ୍ର, ପୋଥି ସଂଗ୍ରହ କରିବାପାଇଁ ତାଙ୍କ ମନରେ ଉତ୍ସାହ ସୃଷ୍ଟି କଲେ । ମାତ୍ର ପୋଥି ପାଇବା ତାଙ୍କ ପକ୍ଷରେ ସବୁଠାରୁ ଗୁରୁତର ସମସ୍ୟା ହୋଇ ଦେଖାଦେଲା । ପୋଥିଗୁଡ଼ିକ ଚନ୍ଦନ ଚର୍ଚ୍ଚିତ ବେଶ ହୋଇ, ଦୁଇଓଳି ପ୍ରସାଦ ସେବନ କରି ପାଣି ଓ ପୋକଙ୍କ ଅଦାଲତରେ ନଷ୍ଟ ହୋଇଯିବ, ବରଂ ପରମ୍ପରାସର୍ବସ୍ୱ ଓଡ଼ିଆ ଆଜି କାହାକୁ ଏଗୁଡ଼ିକୁ ହସ୍ତାନ୍ତର କରିଦେବାକୁ ଉଚିତ ମଣେନା । ପୋଥିଗୁଡ଼ିକ ନଷ୍ଟ ହୋଇ-ଗଲାପରେ, ସେଗୁଡ଼ିକୁ ନଈ କିମ୍ବା ପୁଷ୍କରିଣୀରେ ବିସର୍ଜନ କରିଦିଆଯାଏ । ଏବେ ମଧ୍ୟ ଗ୍ରାମ୍ୟ ଜନତା ଭିତରେ ଏତାଦୃଶ ଅନ୍ଧବିଶ୍ୱାସ ଲକ୍ଷ୍ୟ କରାଯାଏ । ପୁନଶ୍ଚ ବ୍ରାହ୍ମଣେତର ଲୋକମାନଙ୍କର ଭାଗବତ ଗାଦିଥିବା ଘର ଭିତରକୁ ପ୍ରବେଶ କରିବା ମନା । ତେଣୁ ପୋଥି ପାଇବାପାଇଁ ଦାଶରଥିଙ୍କ ପକ୍ଷେ ବହୁ ସମସ୍ୟା ଦେଖାଦିବା ସ୍ୱାଭାବିକ । ମାତ୍ର ଶ୍ରୀହର୍ଷ-ବାବୁଙ୍କ ପ୍ରେରଣା ସଙ୍ଗକୁ, ଶ୍ରୀଯୁକ୍ତ ଅବନୀ କୁମାର ବରାଳଙ୍କ ଉତ୍ସାହ ଦାଶରଥିଙ୍କ ଆଶାକୁ କାର୍ଯ୍ୟରେ ପରିଣତ କଲା । ବାବାଜୀ ବେଶରେ ଝୁଲାଟିଏ କାନ୍ଧରେ ପକେଇ ପୋଥି ମାଗିବା ପାଇଁ ସେ ବାହାରିପଡ଼ିଲେ ।

ମା. ଗାଁ ବୁଲି ବ୍ରାହ୍ମଣ ଘର, ମଠ, ଜମିଦାରମାନଙ୍କର ଠାକୁରଘର-ମାନଙ୍କରୁ ପୋଥି ସଂଗ୍ରହ କରିବାରେ ଲାଗିଲେ । ୧୯୬୨ ମସିହାଠାରେ ପୋଥି ସଂଗ୍ରହ କାର୍ଯ୍ୟରେ ହାତ ଦେଇଥିଲେ ସୁଦ୍ଧା ମାତ୍ର ଦଶ ବର୍ଷ ମଧ୍ୟରେ ପ୍ରାୟ ୧୫ ହଜାରରୁ ଊର୍ଦ୍ଧ୍ୱ ସଂଖ୍ୟକ ପୋଥି ସଂଗ୍ରହ କରିବାପାଇଁ କ୍ଷମ ହୋଇପାରିଛନ୍ତି । ବିପୁଳ ସଂଖ୍ୟକ ପୋଥିମଧ୍ୟରୁ ୭୧ ଖଣ୍ଡରୁ ଅଧିକ ସଂଖ୍ୟକ ଚିତ୍ର ପୋଥି ଉକ୍ତ ସଂଗ୍ରହାଳୟର ବୈଶିଷ୍ଟ୍ୟ ।

* ବହୁ ସଂଖ୍ୟକ ଚିତ୍ର ପୋଥି ଶ୍ରୀଯୁକ୍ତ ଅଜପା ଦାସ ଓ ଶ୍ରୀଯୁକ୍ତ ବ୍ରଜସୁନ୍ଦର ଦାସଙ୍କ ଠାରୁ ସେ ସଂଗ୍ରହ କରିଛନ୍ତି । ବହୁ ପ୍ରାଚୀନ ମାନ୍ଧ ଆକୃତି, ପକ୍ଷୀ ଆକୃତିର କାରୁକାର୍ଯ୍ୟ ଶୋଭିତ ପୋଥିଗୁଡ଼ିକୁ ଦେଖିଲେ ଆଶ୍ଚର୍ଯ୍ୟ ହେବାକୁ ପଡ଼େ । ଅନେକ ପୋଥି କୀଟଦଷ୍ଟ ହୋଇଯାଇଥିବାରୁ ସେଗୁଡ଼ିକ ପଢ଼ିବା ଅବସ୍ଥାରେ ମଧ୍ୟ ନାହାନ୍ତି । ବୈଜ୍ଞାନିକ ଉପାୟରେ ଏଗୁଡ଼ିକର ସଂରକ୍ଷଣର ବ୍ୟବସ୍ଥା କରାଗଲେ, ଓଡ଼ିଆ ସାହିତ୍ୟ ଓ ସଂସ୍କୃତିର ଅମୂଲ୍ୟ ସମ୍ପଦ ହୁଏତ ଦୀର୍ଘସ୍ଥାୟୀ ହେବା ସମ୍ଭବ ହୋଇପାରିବ, ମାତ୍ର ସବୁଠାରୁ କ୍ଷୋଭର କଥା ଏହି ଯେ, ରାଜ ଉଆସଗୁଡ଼ିକରୁ ସେ ଆଦୌ କିଛି ସାହାଯ୍ୟ ପାଇପାରିନାହାନ୍ତି । ଦୁସ୍ଥ ଅଜ୍ଞ ଓ ସାଧାରଣ ଜନତାଙ୍କ ଏ କ୍ଷେତ୍ରରେ ବହୁ ଭାବରେ ସାହାଯ୍ୟ କରିଥିବା କଥା ସେ ନିଜେ ମଧ୍ୟ ସ୍ୱୀକାର କରନ୍ତି । ମହାମନୀଷୀ ଶ୍ରୀ ଅରବିନ୍ଦଙ୍କ ନାମାନୁସାରେ ଉକ୍ତ ସଂଗ୍ରହାଳୟର ନାମକରଣ କରାଯାଇଛି । ଭାରତ ବରିଷ୍ଠ ସ୍ୱାଧୀନତା ସଂଗ୍ରାମୀ, ସାଧକ, ଆଦର୍ଶସ୍ଥାନୀୟ ବ୍ୟକ୍ତି ମହାତ୍ମା ଗାନ୍ଧୀ, ଶ୍ରୀଅରବିନ୍ଦ, ନେତାଜୀ, ଶାସ୍ତ୍ରୀ, ପ୍ରମୁଖଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ କାଳ କାଟିଥିବା ଦାଶରଥି ହିଁ ମହାପୁରୁଷମାନଙ୍କୁ ଯଥାର୍ଥ ସମ୍ମାନ ଦେବା ଉଦ୍ଦେଶ୍ୟରେ ସଂଗ୍ରହାଳୟର ଏପରି ନାମକରଣ କରିଥିବା ସମ୍ଭବ ।

॥ ଚାରି ॥

“ଚନ୍ଦ୍ରମଣି ସାହିତ୍ୟ ସଂସଦ” ଦାଶରଥିଙ୍କ ଦ୍ୱାରା ପ୍ରତିଷ୍ଠିତ ଅନ୍ୟ ଏକ ବରିଷ୍ଠ ଅନୁଷ୍ଠାନ । ନୟାଗଡ଼ର ଇଟାମାଟିରେ ଜନ୍ମଗ୍ରହଣ କରିଥିବା ଓଡ଼ିଆ ସାହିତ୍ୟର ଅନ୍ୟତମ ହାସ୍ୟରସିକ ପ୍ରତ୍ୟୁତ୍ପନ୍ନମତି, ବୁଦ୍ଧିଖିଆ

* ଚିତ୍ର ପୋଥିଗୁଡ଼ିକ ମଧ୍ୟରେ ଗଞ୍ଜାମର ବଡ଼ଖେମୁଣ୍ଡି ଅଞ୍ଚଳର ଗୋପାଳ ଭଞ୍ଜଙ୍କ 'କାମ ବିଜ୍ଞାନ' ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଏତଦ୍‌ବ୍ୟତୀତ ଉଷାଭିଳାଷ, ଶୋଭାବତୀ କାବ୍ୟ, କୃପାସିନ୍ଧୁ ଜଣାଣ, ଗୀତ ଗୋବିନ୍ଦ ଓ ଦଶାବତାର ଆଦି କେତେକ ବହୁ ପ୍ରାଚୀନ ଓ ଚମତ୍କାର ଚିତ୍ରପୋଥିମାନ ରହିଛି ।

କବ ପଦ୍ମନାଭ ମହାପାତ୍ରଙ୍କ ନାମାନୁସାରେ ଉକ୍ତ ଅନୁଷ୍ଠାନର ନାମକରଣ କରାଯାଇଛି । ୧୯୭୫ ମସିହାରେ ଗଠିତ ହୋଇଥିବା ଉକ୍ତ ଅନୁଷ୍ଠାନ ତରଫରୁ ସାହିତ୍ୟ, ସଙ୍ଗୀତ, କଳା ଇତ୍ୟାଦି ଆଦି ବିଭିନ୍ନ କ୍ଷେତ୍ରରେ ଜୀବନ ଯେଉଁ ସାଧନା କରିଥିବା ସାଧକମାନଙ୍କୁ ହିଁ ମାନପତ୍ର ଓ ଉପାୟନ ପ୍ରଦାନ କରାଯାଇଥାଏ । ଓଡ଼ିଶାର ବିଭିନ୍ନ ଅଞ୍ଚଳର ପୁରପଲ୍ଲୀରେ ଅବହେଳିତ ଓ ଲୋକଲୋଚନକୁ ଆସି ପାରୁ ନଥିବା ବୟୋବୃଦ୍ଧ ପ୍ରତିଭାଧରମାନଙ୍କ ସମ୍ପର୍କରେ ଅନ୍ୟମାନଙ୍କୁ ସଚେତନ କରିଦେବା ପାଇଁ ଆନ୍ତରିକ ଚେଷ୍ଟା କରୁଥିବା ଦାଶରଥିଙ୍କ ଏତାଦୃଶ୍ୟ ଉଦ୍ୟମ ପ୍ରଶଂସନୀୟ । ସମ୍ଭବତଃ ଓଡ଼ିଶାର ଅନ୍ୟ କୌଣସି ଅନୁଷ୍ଠାନ ଏଯାବତ୍ ଏପରି ପଦକ୍ଷେପ ଗ୍ରହଣ କରିନାହିଁ । ଜୀବନ୍ତ ପ୍ରତିଭା ପୂଜା ବା ଦୂର୍ଜ୍ୟପୂଜାର ଏ ଯେଉଁ ନୂତନ ପରମ୍ପରା ସେ ତିଆରି କରିଛନ୍ତି, ତାହା ତାଙ୍କୁ ଚିରସ୍ମରଣୀୟ କରି ରଖିବ । ଦୁଇଦିନ ବ୍ୟାପୀ ଅନୁଷ୍ଠିତ ଉକ୍ତ ସାରସ୍ୱତ ସମାବେଶରେ ସାହିତ୍ୟର ବିଭିନ୍ନ ବିଭାଗଗୁଡ଼ିକ ଉପରେ ଆଲୋଚନାମାନ ଅନୁଷ୍ଠିତ ହୋଇଥାଏ । ଓଡ଼ିଶାର ବିଭିନ୍ନ ଅଞ୍ଚଳରୁ ବୟୋବୃଦ୍ଧମାନଙ୍କଠାରୁ ଆରମ୍ଭ କରି ତରୁଣମାନେ ନିମନ୍ତ୍ରିତ ହୋଇ ଆଲୋଚନାଚକ୍ରଗୁଡ଼ିକରେ ସାଧାରଣତଃ ଅଂଶଗ୍ରହଣ କରିଥାନ୍ତି । ବୟୋବୃଦ୍ଧ ଓ ତରୁଣ ଆପଣା ଆପଣାର ବୟସ, ଅହଂକାର ଓ ସମୟର ବ୍ୟବଧାନକୁ ଭୁଲିଯାଇ ଖୋଲାଖୋଲି ଭାବରେ ଆପଣା ଆପଣାକୁ ପ୍ରକାଶ କରିବାର ସୁଯୋଗ ଲାଭ କରିଥାନ୍ତି । ସଂଯତ ଓ ସଂହତ ପରିବେଶ ମଧ୍ୟରେ ହିଁ ପ୍ରତ୍ୟେକ କାର୍ଯ୍ୟକ୍ରମ ସମ୍ପନ୍ନ ହୋଇ-ଥାଏ । ସାହିତ୍ୟ ଆସରଗୁଡ଼ିକର ପରେ ବିଭିନ୍ନ ଅଞ୍ଚଳରୁ ନିମନ୍ତ୍ରିତ ଲୋକନୃତ୍ୟ ଦଳମାନେ ମଧ୍ୟ ନୃତ୍ୟ ଓ ଗୀତ ପରିବେଷଣ କରିଥାନ୍ତି ।

ଦୁଃସ୍ଥ କଳାକାର ଓ ଗରିବ ମେଧାବୀ ଛାତ୍ରମାନଙ୍କ ପାଇଁ କେତୋଟି ବୃତ୍ତିର ମଧ୍ୟ ସେ ବ୍ୟବସ୍ଥା କରିପାରିଛନ୍ତି । ଏ ସମସ୍ତ ଅର୍ଥ ଭିକମାଗିଲାପରି ସାଧାରଣ ଛାତ୍ରଟିଏଠାରୁ ଆରମ୍ଭକରି ଧନୀକ ପର୍ଯ୍ୟନ୍ତ ବିଭିନ୍ନ ବର୍ଗର ଲୋକମାନଙ୍କଠାରୁ ସଂଗ୍ରହ କରିଛନ୍ତି । ଏବେ ମଧ୍ୟ 'ହାତପତା'ର ଶେଷ ହୋଇନି । ବିଭିନ୍ନ ବିଶିଷ୍ଟ ବ୍ୟକ୍ତିମାନଙ୍କ ନାଁରେ ବୃତ୍ତିଗୁଡ଼ିକର ନାମକରଣ କରିବା ତାଙ୍କ ରୁଚିର ଅନ୍ୟ ଏକ ବୈଶିଷ୍ଟ୍ୟ । ସାଧାରଣ ଜନତାଠାରୁ ଅର୍ଥ ସଂଗ୍ରହ କରି ନିର୍ଦ୍ଦିଷ୍ଟ ପରିମାଣର ଅର୍ଥ ନିର୍ଦ୍ଦିଷ୍ଟ ବ୍ୟକ୍ତିଙ୍କ ନାଁରେ ପୋଷ୍ଟ ଅଫିସରେ ଜମା ରଖିଛନ୍ତି । ଜମା ଅର୍ଥର ସୁଧତକ ଦୁସ୍ଥ ସାହିତ୍ୟିକ ଓ ମେଧାବୀ ଛାତ୍ରମାନଙ୍କୁ ପ୍ରଦାନ କରାଯାଉଛି । ସମ୍ବଲପୁରୀ ସାହିତ୍ୟର ବିଶିଷ୍ଟ

ସାହିତ୍ୟିକ ୬ ସତ୍ୟନାରାୟଣ ବନ୍ତଦାର ବରପାଲାର ପଣ୍ଡିତ ଶ୍ରୀଯୁକ୍ତ ଗଢବ ମିଶ୍ର, ସାହିତ୍ୟିକ ୬ ଶୈଳବାଳା ମହାନ୍ତିଙ୍କ ନାମାନୁସାରେ ନାମିତ କେତୋଟି ବୃତ୍ତି ପାଣ୍ଠି ସାଧାରଣ ଜନତାର ପ୍ରଦତ୍ତ ଅର୍ଥରେ ହିଁ ସୃଷ୍ଟି ହୋଇଛି । ଏତଦ୍ ବ୍ୟତୀତ ସମାଜର କେତେକ ଧର୍ମ ଶ୍ରେଣୀର ବ୍ୟକ୍ତି ଆପଣା ଆପଣାର ପିତା, ମାତା କିମ୍ବା ନିଜ ନାମ ଅନୁସାରେ ନିର୍ଦ୍ଦିଷ୍ଟ ପରିମାଣର ଅର୍ଥ ଦେଇ ପାଣ୍ଠିଟିଏ ଲେଖାଏଁ ଖୋଲୁଛନ୍ତି । ଦାଶରଥି ନିଜ ନାଁରେ କିଛି ରଖି ନାହାନ୍ତି । ସମସ୍ତ ପାଣ୍ଠିର ସେ ଜଗୁଆଳି ମାତ୍ର । ତାଙ୍କର ମୃତ୍ୟୁପରେ ସଂଗୃହୀତ ଅର୍ଥର ଅପବ୍ୟୟ ବା ଅପଚୟ ହେବାର ମଧ୍ୟ ସାମାନ୍ୟତମ ସମ୍ଭାବନା ନାହିଁ । ଜଣେ ଦୁସ୍ଥ ସଂଗ୍ରାହକର ମାଗନ୍ତା ପଣରୁ ଜନ୍ମ ନେଇଥିବା ଏତେଗୁଡ଼ିଏ ଅନୁଷ୍ଠାନ ତାଙ୍କ ଉଦାର, ଏକନିଷ୍ଠ ଓ ସମ୍ବେଦନଶୀଳ ବ୍ୟକ୍ତିତ୍ୱର ପରିଚୟ ଦିଏ ।

ମାଗନ୍ତାପଣ ପରି ଅଧ୍ୟୟନ ଓ ସଙ୍କଳନ ମଧ୍ୟ ଦାଶରଥିଙ୍କର ଆଉ ଏକ ବଶିଷ୍ଟ ଗୁଣ । ଆପଣାର ଅଧ୍ୟୟନ ଓ ସଂଗ୍ରହ ପିପାସାକୁ ମେଣ୍ଟେଇବାକୁ ଯାଇଁ ଅନୁଷ୍ଠାନଗୁଡ଼ିକ ସୃଷ୍ଟି କରିଦେଇ ଅଧିକ କାର୍ଯ୍ୟାଭିମୁଖୀ ହୋଇପଡ଼ିଲେ ସୁଦ୍ଧା, ଅଧ୍ୟୟନର ଅଭ୍ୟାସଠାରୁ ଦୂରେଇ ଯାଇପାରି ନାହାନ୍ତି । ପ୍ରାୟ ପ୍ରତ୍ୟହ ପତ୍ରପତ୍ରିକା ଓ ପୁସ୍ତକର ବିଭିନ୍ନ ବ୍ୟକ୍ତି ବିଶେଷଙ୍କ ଲେଖାମାନ ପଢ଼ି ସେମାନଙ୍କ ପାଖକୁ ଉତ୍ସାହମୂଳକ ପତ୍ର ଲେଖନ୍ତି । ବିଶେଷତଃ ଯୁବ ଲେଖକମାନଙ୍କର ସୃଷ୍ଟିର ସେ ଜଣେ ପ୍ରଶଂସକ ବୋଲି କହିଲେ ଭୁଲ ହେବନାହିଁ । ସାରା ଓଡ଼ିଶାରେ ତାଙ୍କପରି ଆଉ ଜଣେ ପାଠକ ଥିଲାପରି ମନେ ହୁଏନା । ପୋଷ୍ଟକାର୍ଡ଼ ଭର୍ତ୍ତିକରି କେତେବେଳେ ସେ ଏତେ ସଂଖ୍ୟାରେ ଚିଠି ଲେଖନ୍ତି, ଭାବିଲେ ଆଶ୍ଚର୍ଯ୍ୟ ଲାଗେ ।

କଳାକାରର ସୃଷ୍ଟିକୁ ହୃଦୟଙ୍ଗମ କରିବାରେ ରସିକ ବା ସାମାଜିକମାନଙ୍କପରି ସଂଗ୍ରାହକମାନଙ୍କର ମଧ୍ୟ ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି । ସଂରକ୍ଷଣ ବିନା କଳା ଅବହେଳାରୁ ସମୟ ଗର୍ଭରେ ନଷ୍ଟ ହୋଇଯାଏ । ସଂଗ୍ରହ ଓ ସଂରକ୍ଷଣ ଅଭାବରୁ ଆମଦେଶର ପ୍ରାଚୀନ ସାହିତ୍ୟ ଧର୍ମ, ଦର୍ଶନ, ଶାସ୍ତ୍ର, ଭାସ୍କର୍ଯ୍ୟ ଆଦିର ଯେଉଁ ପରିମାଣରେ ବିପୁଳକ୍ଷତି ଘଟିଛି, ସେ ସମ୍ପର୍କରେ ପ୍ରତ୍ୟେକ ବିଜ୍ଞବ୍ୟକ୍ତି ସଚେତନ । ଏବେ ସରକାର କଳାର ସଂରକ୍ଷଣ ପାଇଁ ଯଥେଷ୍ଟ ଗୁରୁତ୍ୱ ଆରୋପ କରୁଛନ୍ତି । ମାତ୍ର ଜଣେ ଏକ ନିର୍ଦ୍ଦିଷ୍ଟ ବ୍ୟକ୍ତି ଆପଣାର ଏକକ ଉଦ୍ୟମରେ ସାରସ୍ୱତ ସମ୍ପତ୍ତିକୁ ରକ୍ଷଣାବେକ୍ଷଣ କରିବା ପାଇଁ ସାହସ କରିବା, କିଛି ସାଧାରଣ କଥା ନୁହେଁ । ଏଇ ଏକକ ବ୍ୟକ୍ତିମାନଙ୍କର ଦୂରଦୃଷ୍ଟିର ଫଳ ହିଁ

ଭବିଷ୍ୟତ ବଂଶଧରମାନେ ଉପଭୋଗ କରିଥା'ନ୍ତି । ଏକାଧାରରେ ରସିକ ଓ ସଂଗ୍ରାହକ ଦାଶରଥି ଆପଣାର ଜୀବନବ୍ୟାପୀ ସାଧନାରେ କଳାର ସଂରକ୍ଷଣ କ୍ଷେତ୍ରରେ ଯେଉଁ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଛନ୍ତି, ଏ ଜାତି ତାଙ୍କର ମହତ୍ତ୍ୱକୁ ଭୁଲିଯାଇ ପାରିବ ନାହିଁ । ସମସ୍ତ ପାର୍ଥିବ ଜଞ୍ଜାଳ, ଅହଙ୍କାରକୁ ତୁଚ୍ଛ ମଣି ଏକଆଖିଆ ଦାଶରଥି, ରାସ୍ତାଘାଟ, ଦୋକାନ ବଜାର, ଘର, ରାଜଦରବାରରେ ଛିଣ୍ଡାକାଗଜ, ଠେଙ୍ଗାଠାରୁ ଆରମ୍ଭ କରି ବହି, ପତ୍ରପତ୍ରିକା, ମାଟିଗୋଡ଼, ପଥର, ମୂର୍ତ୍ତି, ପୋଥି, କଉଡ଼ି ଆଦି ପଦାର୍ଥମାନ ଯୋଉଠି ଯାହା ପାଆନ୍ତି, ଆପଣା କାନ୍ଧରେ ଝୁଲୁଥିବା ବସ୍ତାପରି ବ୍ୟାଗଟିରେ ଭର୍ତ୍ତିକରି ଆଗେଇଯା'ନ୍ତି । ଗାଁରେ ସୋପାଡ଼ି ଦେଇ ଆସନ୍ତି । କେତେବେଳେ ସେ କୋଉଠି ଥା'ନ୍ତି, ତା'ର କିଛି ଠିକ୍ ଠିକଣା ନାହିଁ । ଭିକ ମାଗିବାରେ ଲାଜ କି କ୍ଲାନ୍ତି ନାହିଁ । ବୟସର ଓଜନକୁ ମଧ୍ୟ ପାଶୋରି ପକେଇଛନ୍ତି । ରକ୍ଷଣାବେକ୍ଷଣର ଅଭାବରୁ ବହୁ ସଂଗୃହୀତ ପଦାର୍ଥ ନଷ୍ଟ ହୋଇଯିବାକୁ ବସିଲାଣି ।

ଏବେ ଅବଶ୍ୟ ସରକାରୀ ସାହାଯ୍ୟ ଓ ଆପଣା ଉଦ୍ୟମରେ ଦୁଇଟି କୋଠରି ଥିବା ଏକଚାଳିଆ ଘରଟିଏ ତିଆରିକରି ପୁସ୍ତକ, ପତ୍ରିକା, ପୋଥି ଓ ସଂଗ୍ରହାଳୟର ମୂଲ୍ୟବାନ ସାମଗ୍ରୀକୁ ସଜେଇ ରଖିବାକୁ ସକ୍ଷମ ହୋଇ-ପାରିଛନ୍ତି; ମାତ୍ର ଏ ସ୍ଥାନେ ଯଥେଷ୍ଟ ନୁହେଁ । ସମୁଦ୍ରକୁ ଶଙ୍ଖେ ପରି ମନେହୁଏ । ପାଠାଗାର ଓ ସଂଗ୍ରହାଳୟକୁ ଆପଣା ଆପଣାର ବ୍ୟବହାରରେ ଲଗେଇବାକୁ ଯାଇଥିବା ଗବେଷକମାନଙ୍କର ଅବସ୍ଥାନ ପାଇଁ ମଧ୍ୟ ବିଶେଷ କିଛି ସୁବିଧା ନାହିଁ । ନୂଆ ଗାଁରେ ରହି, ସେଠାରୁ ତିନି କିଲୋମିଟର ଦୂର ଉଦୟପୁରକୁ ଆସିବାକୁ ପଡ଼ିଥାଏ । ଅନେକ ସମୟରେ ଦାଶରଥିଙ୍କ ପରିବାରରେ ମଧ୍ୟ ସେମାନଙ୍କୁ ଅତିଥି ହେବାକୁ ପଡ଼େ । ଗବେଷକ ପଣ୍ଡିତ ଓ କଳା ସଂସ୍କୃତି ପ୍ରେମୀ ବ୍ୟକ୍ତିମାନଙ୍କର 'ତୀର୍ଥ ଭୂମି' ଉଦୟ-ପୁରର ଉନ୍ନତି ପ୍ରତି ସରକାର ଦୃଷ୍ଟି ଦେଲେ ବହୁ ସମସ୍ୟାର ସମାଧାନ ହୋଇପାରନ୍ତା । ବ୍ୟକ୍ତିଙ୍କ ଉଦ୍ୟମ ଓ ଶ୍ରମରେ ସଂଗୃହୀତ ଦୁର୍ଲ୍ଲଭ ସମ୍ପତ୍ତି-ଗୁଡ଼ିକର ଉପଯୁକ୍ତ ରକ୍ଷଣାବେକ୍ଷଣ ହେବା ସଙ୍ଗେ ସଙ୍ଗେ ଅନ୍ୟମାନଙ୍କର ବ୍ୟବହାରରେ ଆସିପାରନ୍ତା । ଆପଣାକୁ କଣା ଦାସିଆ ନାଁରେ ପରିଚୟ ଦେଉଥିବା, ଢେଙ୍ଗା, ହାଡ଼ୁଆ, ବାବାଜୀ ଭେକଧାରୀ ଏଇ ମଣିଷଟି କେବଳ ଜଣେ ସଂଗ୍ରାହକ ନୁହେଁ, ବରଂ ଆତ୍ମନିଷ୍ଠ ସାଧନା ଓ ଯୋଗର ସ୍ୱର୍ଗୀୟ ଭାବରେ ବିଭୋର ଏକ ସଂସ୍କୃତି ସଚେତନ ମାନବୀୟ ସତ୍ତା ବୋଲି କହିଲେ, ତାଙ୍କ ସାଧନାକୁ ଯଥାଯଥ ସମ୍ମାନ ଦିଆଯାଇ ପାରିବ । ●